ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ସେରଲକ୍ ହୋମ୍ସ୍ କାହାଣୀ

୨



ଗ୍ରନ୍ଥମନ୍ଦିର

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା :

# ସେରଲକ୍ ହୋମ୍ସ କାହାଣୀ

[ ଦ୍ୱିତୀୟ ଖଣ୍ଡ ]

ମୂଳରଚନା
ସାର୍ ଆର୍ଥର୍ କୋନାନ୍‌ଡଏଲ୍

ଅନୁବାଦକ
ଶ୍ରୀ ଦିବାକର ପାଣି

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର
**ଅପ୍‌ଟିମା ପ୍ରିଣ୍ଟସ୍,** ସୂତାହାଟ, କଟକ-୧

ପ୍ରଥମ ମୁଦ୍ରଣ : ୧୯୮୦
ପରିମାର୍ଜିତ ନୂତନ ସଂସ୍କରଣ : ୧୯୯୬
ପୁନର୍ମୁଦ୍ରଣ : ୨୦୦୨

ମୂଲ୍ୟ : ଟ. ୨୫/-

# ସୂଚୀ



---

# ବୋହେମିଆର ଅପବାଦ

ସେରଲକ୍ ହୋମ୍‌ଙ୍କ ପାଖରେ ସେ କେବଳ ନାରୀ; ତା'ଛଡ଼ା ତାଙ୍କର ଅନ୍ୟ କୌଣସି ନାଁ ମୁଁ ହୋମ୍‌ଙ୍କ ମୁହଁରୁ ଶୁଣିନାହିଁ। ତାଙ୍କ ଆଖିରେ ନାରୀମାନଙ୍କ ଭିତରେ ସେ ସର୍ବଶ୍ରେଷ୍ଠା। ତା' ବୋଲି ଆଇରିନ୍ ଆଡ୍‌ଲର୍‌ଙ୍କୁ ଯେ ସେ ପ୍ରେମ କରୁଥିଲେ, ତା' ନୁହେଁ। ସବୁ ପ୍ରକାରର ଭାବପ୍ରବଣତା, ବିଶେଷତଃ ପ୍ରେମଜନିତ ଭାବପ୍ରବଣତା ତାଙ୍କ ରୁଚିର ବାହାରେ ଥିଲା। ମୋ ମତରେ ପର୍ଯ୍ୟବେକ୍ଷଣ ଏବଂ ବିଚାର କରିବାରେ ସେ ପୃଥିବୀରେ ଅଦ୍ୱିତୀୟ; କିନ୍ତୁ ପ୍ରେମିକଭାବେ ତାଙ୍କର ସ୍ଥାନ ସବୁଠୁ ତଳେ। ନାରୀମାନଙ୍କ କଥା କହିଲାବେଳେ ସେ ଘୃଣାରେ ନାକ ଟେକନ୍ତି। ତଥାପି ଜଣେ ନାରୀପ୍ରତି ତାଙ୍କର ଶ୍ରଦ୍ଧା ଥିଲା; ସେ ହେଲେ ଆଇରିନ୍ ଆଡ୍‌ଲର୍।

କିଛି ଦିନଧରି ହୋମ୍‌ଙ୍କ ସାଥିରେ ମୋର ଦେଖାସାକ୍ଷାତ୍ ନଥାଏ। ମୋ ବିବାହ ପରେ ମୁଁ ତାଙ୍କ ପାଖରୁ ଆସି ଅଲଗା ରହୁଥାଏ। ନିଜର ସୁଖ ଆଉ ପାରିବାରିକ ଧନ୍ଦାରେ ମୁଁ ବୁଡ଼ି ରହିଥାଏ। ତେଣେ ବେକର୍ ଷ୍ଟ୍ରୀଟ୍‌ରେ ଆମ ବସାଘରେ ହୋମ୍ ତାଙ୍କର ବହିପତ୍ର, କୋକେନ୍ ଇତ୍ୟାଦିରେ ବୁଡ଼ି ରହିଥାନ୍ତି। କୌଣସି ପ୍ରକାର ସାମାଜିକ ଜୀବନକୁ ସେ ଭଲପାଆନ୍ତି ନାହିଁ। ସବୁଦିନ ପରି ସେ ଅପରାଧ ଚର୍ଚ୍ଚାରେ ଲାଗିଥାନ୍ତି। ଯେଉଁସବୁ ରହସ୍ୟ ଉଦ୍‌ଘାଟନ ଅସମ୍ଭବ ବୋଲି ପୋଲିସ୍ ପରିତ୍ୟାଗ କରିଦେଇଥାନ୍ତି, ତା'ର କୌଣସି ସୂତ୍ର ବାହାର କରିବାକୁ ସେ ତାଙ୍କର ସବୁ ଶକ୍ତି ଆଉ ବୁଦ୍ଧି ଖଟାଇ ଲାଗିପଡ଼ିଥାନ୍ତି।

ଏ ଭିତରେ ମୁଁ ମୋର ଡାକ୍ତରୀ ବ୍ୟବସାୟ ଆରମ୍ଭ କରିଦେଇଥାଏ। ଦିନେ ରାତିରେ ମୁଁ ଜଣେ ରୋଗୀ ଦେଖି ଘରକୁ ଫେରୁଥାଏ। ବେକର୍ ଷ୍ଟ୍ରୀଟ୍ ଦେଇ ଆସିବାକୁ ପଡ଼ିଲା। ମୋର ଚିରପରିଚିତ ଘରପାଖ ଦେଇ ଆସିଲାବେଳେ ହୋମ୍‌ଙ୍କୁ ଦେଖିବାକୁ, ଆଉ ସେ କ'ଣ କରୁଛନ୍ତି ଜାଣିବାକୁ ପ୍ରବଳ ଇଚ୍ଛା ହେଲା। ଉପରକୁ ଚାହିଁଲି। ତାଙ୍କ କୋଠରିରେ ଆଲୁଅ

ଜଳୁଛି। ପରଦା ଉପରେ ତାଙ୍କ ଛାଇ ଦିଶିଲା। ହାତ ଦୁଇଟା ପଛପାଖେ ଛନ୍ଦି ସେ ଘର ଭିତରେ ଏପାଖ ସେପାଖ ହେଉଥିଲେ। ମୁଣ୍ଡ ଛାତି ଉପରକୁ ଓହଳି ପଡ଼ିଥିଲା। ମୁଁ ତାଙ୍କ ହାବଭାବ ଅଭ୍ୟାସ ସବୁ ଜାଣେ। ବୁଝିଲି, ସେ ପୁଣି କାମରେ ଲାଗିଯାଇଛନ୍ତି। କୌଣସି ନୂଆ ସମସ୍ୟା ନେଇ ସେ ବ୍ୟସ୍ତ। କଲିଙ୍ଗ୍ ବେଲ୍ ବଜାଇ ମୁଁ ଘର ଭିତରକୁ ଗଲି। ମୋତେ ଦେଖି ସେ ଖୁସି ହେଲେ; କିନ୍ତୁ ଆନନ୍ଦରେ ଅଧୀର ହୋଇଉଠିଲେ ନାହିଁ। ନୀରବରେ ଗୋଟେ ଚଉକିରେ ବସିବାକୁ ମୋତେ ଠାରିଲେ। ସିଗାରେଟ୍ ଡବାଟା ମୋ ଆଡ଼କୁ ବଢ଼ାଇଦେଲେ।

ତା'ପରେ ଥରେ ମୋ ଉପରେ ଆଖି ବୁଲାଇନେଇ କହିଲେ, ''ବିବାହବନ୍ଧନ ତୁମକୁ ବେଶ୍ ସୁହାଉଛି। ମୁଁ ଦେଖୁଛି, ଏ ଭିତରେ ତୁମର ଓଜନ ସାଢ଼େ ସାତ ପାଉଣ୍ଡ ବଢ଼ିଯାଇଛି।''

''ସାତ ପାଉଣ୍ଡ,'' ମୁଁ ଉତ୍ତର ଦେଲି।

''ବାସ୍ତବିକ୍, ମୋର ଆଉ ଟିକିଏ ଭାବିବାର ଥିଲା। ତା'ପରେ ତୁମ ବ୍ୟବସାୟ କଥା। ତୁମେ ଡାକ୍ତରୀ ବ୍ୟବସାୟ କରିବ ବୋଲି ମୋତେ ତ କହିନାହଁ।''

''ତେବେ ତୁମେ ଜାଣିଲ କିପରି ?''

''ତୁମକୁ ଦେଖି ଜାଣିଲି। କହ ତ ଦେଖି, ମୁଁ କେମିତି ଜାଣିଲି ଯେ ନିକଟରେ ତୁମେ ବର୍ଷାରେ ତିନ୍ତିଥିଲ, ଆଉ ତୁମର ଗୋଟେ ଦାୟିତ୍ୱହୀନ, ରୁଚିହୀନ ଚାକରାଣୀ ପିଲା ଅଛି ?''

''ହୋମ୍! ଏ ତ ବଡ଼ ବିଚିତ୍ର କଥା! ତୁମେ ଯଦି ଶହେ ଦୁଇଶହ ବର୍ଷ ପୂର୍ବେ ଜନ୍ମ ହୋଇଥାନ୍ତ, ଲୋକେ ତୁମକୁ ଡାଆଣୀ ବୋଲି ଜିଅନ୍ତା ପୋଡ଼ି ପକାଇଥାନ୍ତେ। ସତରେ, ଗଲା ଗୁରୁବାର ଦିନ ମୁଁ ସହରତଳି ମଫସଲ ଅଞ୍ଚଳକୁ ଚାଲିଯାଇଥିଲି। ଫେରିଲାବେଳକୁ ବର୍ଷାରେ ତିନ୍ତି ପାଣି-କାଦୁଅ ହୋଇ ଫେରିଲି; କିନ୍ତୁ ମୁଁ ତ ମୋ ପୋଷାକ ବଦଳାଇ ଦେଇଛି। ତୁମେ କିପରି ଅନୁମାନ କଲ, ବୁଝିପାରୁନାହିଁ। ଆଉ ମୋ ଚାକରାଣୀ ମେରୀ ଜେନ୍‌କୁ ଯେତେ କହିଲେ ବି ହେଲାନାହିଁ। ସେଥିପାଇଁ ମୋ ସ୍ତ୍ରୀ ତାକୁ ବିଦା କରିଦେବାକୁ ଶୁଣାଇ ଦେଇଛନ୍ତି। ତେବେ ତା' କଥା ତୁମେ କେମିତି ଜାଣିଲ, ମୁଁ ତ କିଛି ବୁଝିପାରିଲି ନାହିଁ।''

ସେ ହସି ହାତ ଦୁଇଟା ମଳି କହିଲେ, ''ଏଟା ଅତି ସହଜ। ମୁଁ ଦେଖୁଛି, ତୁମ ବାଁ ପାଦ ଜୋତାରେ ଛଅଟା କଟା ଗାର। ନିଶ୍ଚୟ କେହି ଜୋତାରୁ ଶୁଖିଲା କାଦୁଅ ଛଡ଼ାଇଲାବେଳେ ସେ ଦାଗ ହୋଇଛି। ତେଣୁ ତୁମେ ବର୍ଷାରେ ତିନ୍ତିବା ଆଉ ତୁମ ଚାକରାଣୀ ନିହାତି ଅସାବଧାନ ବୋଲି ମୁଁ ଜାଣିପାରିଲି। ତା'ପରେ ତୁମ ଡାକ୍ତରୀ ବ୍ୟବସାୟ କଥା। ତୁମେ ଘର ଭିତରକୁ ପଶିଲାବେଳକୁ ଆଇଡ଼ୋ ଫର୍ମ ଗନ୍ଧ ହେଲା, ତୁମ ଡାହାଣ ହାତ ବିଶିଆଙ୍ଗୁଠିରେ ସିଲ୍ଭର ନାଇଟ୍ରେଟ୍ ଦାଗ— ଏସବୁରୁ ତୁମେ ଡାକ୍ତରୀ କାମରେ ତତ୍ପର ବୋଲି କହି ନପାରିବାଟା ମୋର ନିର୍ବୋଧତା ନୁହେଁ କି ?''

ହୋମ୍‌ଙ୍କ ଅନୁଶୀଳନ ପଦ୍ଧତି ଏଡ଼େ ସହଜ ଦେଖି ମୁଁ ନ ହସି ରହିପାରିଲି ନାହିଁ। କହିଲି, ''ତୁମଠୁ ଶୁଣିଲା ପରେ ମୋର ମନେହୁଏ ଯେ ମୁଁ ବି ଏହା କରିପାରିଥାନ୍ତି; କିନ୍ତୁ ପ୍ରତ୍ୟେକ ଘଟଣାରେ ତୁମେ ତୁମ ଅନୁଶୀଳନ ନବୁଝାଇବାଯାଏ ମୁଁ ଘାବରେଇ ଯାଉଛି। ମୋ ଆଖି ତ ତୁମ ଆଖିଠୁ କିଛି ଖରାପ ନୁହେଁ।''

''ତା ସତ। ତୁମେ ଦେଖ, କିନ୍ତୁ ପର୍ଯ୍ୟବେକ୍ଷଣ କରନାହିଁ। ପାର୍ଥକ୍ୟଟା ବେଶ୍ ପରିଷ୍କାର। ଉଦାହରଣ ସ୍ୱରୂପ ତଳ ହଲ୍ ଘରୁ ଏ ଘରକୁ ଯେଉଁ ପାହାଚ, ତୁମେ ତ ତାକୁ ବରାବର ଦେଖୁଛ।''

''ହଁ ଦେଖୁଛି।''

''କେତେ ଥର ଦେଖିଲଣି ?''

''ଶହ ଶହ ଥର।''

''କେତେଟା ପାହାଚ ଅଛି ?''

''ମୁଁ ଜାଣେନା।''

''ହଁ, ତୁମେ ପାହାଚଗୁଡ଼ା ଦେଖିଛ; କିନ୍ତୁ ଲକ୍ଷ୍ୟ କରିନାହଁ। ମୁଁ ଜାଣେ ଯେ ସତରଟା ପାହାଚ ଅଛି; କାରଣ ମୁଁ ଦେଖିଛି ଆଉ ଲକ୍ଷ୍ୟ କରିଛି। ଯାହାହେଉ, ତୁମେ ଏଇସବୁ ଛୋଟ ଛୋଟ ସମସ୍ୟାରେ ଖୁବ୍ ଆଗ୍ରହୀ, ଆଉ ମୋର କେତେଟା ଛୋଟ ଛୋଟ ଅନୁଭୂତି ସଜାଇ ଲେଖିଛି। ତେଣୁ ଏ ଘଟଣାଟାରେ ବୋଧହୁଏ ତୁମର ଆଗ୍ରହ ହେବ।'' ଏତିକି କହି ଟେବୁଲ ଉପରୁ ଖଣ୍ଡେ ନାଲି ରଙ୍ଗର କାଗଜ ମୋ

ଆଡ଼କୁ ପକାଇ ଦେଇ କହିଲେ, ''ଏ ଚିଠିଟା ଡାକରେ ଆସିଛି; ମତେ ଶୁଣାଇ ପଢ଼।''

ଚିଠିଟାରେ ତାରିଖ, ଦସ୍ତଖତ ବା ଠିକଣା କିଛି ନଥିଲା। ଲେଖାଥିଲା, 'ଆଜି ରାତି ଆଠଟା ବାଜିବାର ପନ୍ଦର ମିନିଟ୍ ପୂର୍ବରୁ ଜଣେ ଭଦ୍ରଲୋକ ଆପଣଙ୍କ ପାଖକୁ ଯିବେ। ସେ ଏକ ଗୁରୁତର ଘଟଣା ବିଷୟରେ ଆପଣଙ୍କ ସଙ୍ଗେ ଆଲୋଚନା କରିବେ। ଏବେ ଆପଣ ଇଉରୋପର ଏକ ରାଜପରିବାରକୁ ଯେପରି ସାହାଯ୍ୟ କରିଛନ୍ତି, ସେଥିରୁ ଜଣାଯାଏ, ଅତି ଗୁରୁତ୍ୱପୂର୍ଣ୍ଣ ଘଟଣା ଆପଣଙ୍କ ଉପରେ ସ୍ୱଚ୍ଛନ୍ଦରେ ନ୍ୟସ୍ତ କରାଯାଇପାରେ। ଆପଣଙ୍କ ବିଷୟ ଆମେ ଚାରିଆଡୁ ଶୁଣିବାକୁ ପାଇଛୁ। ନିର୍ଦ୍ଧାରିତ ସମୟରେ ଆପଣଙ୍କ କୋଠରିରେ ଥିବେ। ଆପଣ ସାକ୍ଷାତ୍‌କାରୀ ଯଦି ମୁଖା ପିନ୍ଧିଥାଏ, କିଛି ମନେକରିବେ ନାହିଁ।'

ପଢ଼ିସାରି ମୁଁ କହିଲି, ''ଏ ତ ବାସ୍ତବିକ ଏକ ପ୍ରହେଳିକା। ଏହାର ଅର୍ଥ କ'ଣ ବୋଲି ତୁମେ ଭାବୁଛ?''

''ମୋ ପାଖରେ ଏ ବିଷୟରେ କିଛି ତଥ୍ୟ ନାହିଁ। ତଥ୍ୟ ନଥାଇ କିଛି ସିଦ୍ଧାନ୍ତ କରିବା ଏକ ବଡ଼ ଭୁଲ। ତେବେ ଏ ଚିଠିଖଣ୍ଡ– ଏଥିରୁ ତୁମେ କ'ଣ ଅନୁମାନ କରୁଛ?''

କାଗଜ ଏବଂ ଲେଖାକୁ ଭଲଭାବେ ପରୀକ୍ଷା କରି, ହୋମ୍‌ଙ୍କ ପଦ୍ଧତି ଅନୁସରଣ କରି ମୁଁ କହିଲି, ''ଯେଉଁ ଲୋକ ଏ ଚିଠି ଲେଖିଛି, ସେ ବୋଧେ ବେଶ୍ ଧନୀ। ଏ କାଗଜ ପାକେଟ୍‌ର ଦାମ୍ ଅଧକ୍ରାଉନ୍‌ରୁ କମ୍ ହେବନାହିଁ। ଏହା ଅସାଧାରଣ ଟାଣ ଏବଂ ମଜଭୁତ।''

''ହଁ, ଅସାଧାରଣ ଶବ୍ଦଟା ଠିକ୍ ପ୍ରଯୁଜ୍ୟ। ଏ କାଗଜ ଇଂଲଣ୍ଡରେ ତିଆରି ନୁହେଁ। ଆଚ୍ଛା, କାଗଜଟା ଆଲୁଅ ପାଖରେ ଧର।''

ମୁଁ ସେଇଆ କଲି। ଦେଖିଲି, କାଗଜ ତିଆରିବେଳେ ତା' ଭିତରେ ଇ, ଜି, କା, ଜି, ଟି ଅକ୍ଷରସବୁ ରହିଛି।

''ଏ ଅକ୍ଷରରୁ ତୁମେ କ'ଣ ବୁଝୁଛ?'' ହୋମ୍ ପଚାରିଲେ।

''କାଗଜ-ନିର୍ମାତାର ନାଁ କିମ୍ବା ସଂକ୍ଷିପ୍ତ ନାଁର ଅକ୍ଷର ନିଶ୍ଚୟ।''

''ମୋଟେ ନୁହେଁ। 'ଜି' ଆଉ 'ଟି'ର ଅର୍ଥ ହେଲା ଗେସେଲ୍‌ସ୍‌ଚାଫ୍ଟ୍। କମ୍ପାନୀ ଶବ୍ଦର ଜର୍ମାନ୍ ଅନୁବାଦ। ଆମେ ଯେମିତି 'କୋ' ଲେଖୁ,

ଜର୍ମାନ୍ ଭାଷାରେ ସେମିତି 'ଜିଟି'। 'କା' ଅକ୍ଷର ଅବଶ୍ୟ କାଗଜକୁ ବୁଝାଉଛି। ବାକି 'ଇ' 'ଜି'ର ଅର୍ଥ କ'ଣ ? ଆଚ୍ଛା, ଆମ ମହାଦେଶୀୟ ବିବରଣ ବହି ଦେଖିବା। ଏଇ ଦେଖ, 'ଇଜ୍ରିଆ'। ଏଇଟା ହେଲା ଜର୍ମାନ୍ ଭାଷା କହୁଥିବା ଏକ ଅଞ୍ଚଳ, ବୋହେମିଆରେ।''

''କାଗଜଟା ତେବେ ତ ବୋହେମିଆରେ ତିଆରି।''

''ଅନ୍ତତଃ ସେଇଆ। ଆଉ ଯେଉଁ ଲୋକ ଏ ଚିଠି ଲେଖିଛି, ସେ ଜଣେ ଜର୍ମାନ୍। ଲେଖାର ଢଙ୍ଗରୁ ବି ସେଇଆ ଜଣାଯାଉଛି। ବାକି ରହିଲା ସେ କ'ଣ ଚାହାନ୍ତି, ଆଉ ମୁଖା ପିନ୍ଧିବାକୁ କାହିଁକି ଇଚ୍ଛା କରିଛନ୍ତି, ଜାଣିବା କଥା। ଏଇ, ବୋଧହୁଏ ସେ ଆସୁଛନ୍ତି। ବାହାରେ ଘୋଡ଼ାଟାପୁର ଶବ୍ଦ ଶୁଭୁଛି। ଶବ୍ଦରୁ ଜଣାଯାଉଛି ଦୁଇଟା ଘୋଡ଼ା।''

ଝରକାବାଟେ ବାହାରକୁ ଚାହିଁ ସେ କହିଲେ, ''ହଁ, ଗୋଟେ ଗାଡ଼ି, ଆଉ ଦୁଇଟା ସୁନ୍ଦର ଘୋଡ଼ା, ଖୁବ୍ ଦାମିକା। ଏ କେଶ୍‌ଟାରେ ଆଉ କିଛି ନହେଲେ ବି ଭଲ ପଇସା ମିଳିବ ୱାଟ୍‌ସନ୍!''

''ମୁଁ ତେବେ ଏଠୁ ଚାଲିଯିବା ଭଲ।''

''ନା ନା, ତୁମେ ବସ। ତୁମେ ନ ଥିଲେ ମୁଁ କିଛି କରିପାରିବିନାହିଁ। ତା'ଛଡ଼ା ଏ ଘଟଣାଟା ବେଶ୍ କୌତୂହଳପ୍ରଦ। ଏଟାକୁ ତୁମେ ହରାଇବ କେମିତି ?''

''କିନ୍ତୁ ତୁମ ମହକିଲ–''

''ସେ କଥା ଚିନ୍ତାକରନାହିଁ। ମୁଁ ତୁମର ସାହାଯ୍ୟ ଦର୍କାର କରିପାରେ, ସେ ମଧ୍ୟ ଦର୍କାର କରିପାରନ୍ତି। ଏଇ ସେ ଆସୁଛନ୍ତି। ସେଇ ଚଉକିରେ ବସ ଡାକ୍ତର! ଆଉ ଆମ କଥାକୁ ଖୁବ୍ ମନଦେବ।''

ଦରଜା ବାହାରେ କେହି ଆସି ଠିଆ ହୋଇ କବାଟରେ ଠକ୍ ଠକ୍ ଶବ୍ଦ କଲା। ''ଭିତରକୁ ଆସନ୍ତୁ।'' ହୋମ୍ସ କହିଲେ। ଜଣେ ଭଦ୍ରଲୋକ ଭିତରକୁ ଆସିଲେ। ତାଙ୍କ ଉଚ୍ଚତା ଛଅ ଫୁଟ ଛଅ ଇଞ୍ଚରୁ କମ୍ ହେବନାହିଁ। ସୁଗଠିତ ଶରୀର। ତାଙ୍କ ପୋଷାକ ଅତି ଦାମିକା। ତା' ଉପରେ ବେକ ପାଖରେ ଏକ ନୀଳମଣି। ହାତରେ ସେ ନିଜର ଟୋପିଟି ଧରିଥିଲେ। ଏଣେ ମୁହଁରେ ଗୋଟାଏ ଛଦ୍ମମୁଖା କପାଳରୁ

ଗାଲର ହନୁହାଡ଼ ତଳକୁ ପଡ଼ିଛି। ମୁହଁର ତଳଭାଗରୁ ଜଣାଯାଉଥିଲା ସେ ଜଣେ ଦୃଢ଼ ଚରିତ୍ର ଆଉ ଜିଦ୍‌ଖୋର୍ ଲୋକ। ଗମ୍ଭୀର ଏବଂ କର୍କଶ କଣ୍ଠରେ ସେ କହିଲେ, ''ଆପଣ ମୋ ଚିଠି ପାଇଥିଲେ? ମୁଁ ଆସିବି ବୋଲି ଲେଖିଥିଲି।'' ତାଙ୍କ କଥାରୁ ସେ ଜର୍ମାନ୍ ପରି ଜଣାଯାଉଥିଲେ।

ହୋମ୍ ଉତ୍ତର ଦେଲେ, ''ଦୟାକରି ବସନ୍ତୁ। ଏ ମୋର ବନ୍ଧୁ ଆଉ ସହକର୍ମୀ ଡାକ୍ତର ୱାଟ୍‌ସନ୍। ଅନେକ କେଶ୍‌ରେ ସେ ମୋତେ ସାହାଯ୍ୟ କରିଛନ୍ତି। ହଁ, ଆପଣଙ୍କର ପରିଚୟ ପାଇପାରିବି କି?''

''ମୁଁ ବୋହେମିଆର ଜଣେ ସଂଭ୍ରାନ୍ତ ଲୋକ। ଆପଣ ମୋତେ କାଉଣ୍ଟ୍ ଭନ୍‌କ୍ରାମ୍ ବୋଲି ଡାକିପାରନ୍ତି। ଆପଣଙ୍କ ବନ୍ଧୁ ନିଶ୍ଚୟ ଜଣେ ବିଜ୍ଞ ଆଉ ବିଶ୍ୱସ୍ତ ଲୋକ। ତା' ନହେଲେ ମୁଁ କେବଳ ଆପଣଙ୍କ ସାଥିରେ କଥାବାର୍ତ୍ତା କରିବି।''

ମୁଁ ଉଠି ଠିଆହେଲି। ହୋମ୍ ମୋ ହାତ ଧରି ବସାଇ ଦେଇ କହିଲେ, ''କଥାବାର୍ତ୍ତା ଆମ ଦୁଇଜଣଙ୍କ ସାଥିରେ କିମ୍ବା ମୋଟେ ନୁହେଁ। ଆପଣ ମୋତେ ଯାହା କହିବା କଥା ଏ ଭଦ୍ରଲୋକଙ୍କ ଆଗରେ ନିର୍ଭୟରେ କହିପାରନ୍ତି।''

''ମୁଁ କଥାଟା ଆରମ୍ଭ କରୁଛି; କିନ୍ତୁ ତା' ପୂର୍ବରୁ ଆପଣ ଦୁଇଜଣ ନିୟମ କରନ୍ତୁ ଯେ ଦୁଇବର୍ଷଯାଏ କଥାଟା ପ୍ରକାଶ କରିବେ ନାହିଁ। ତା'ପରେ ଘଟଣାର ଗୁରୁତ୍ୱ ନଥିବ; କିନ୍ତୁ ବର୍ତ୍ତମାନ ଘଟଣାଟା ଏତେ ଗୁରୁତ୍ୱପୂର୍ଣ୍ଣ ଯେ ତାହା ପ୍ରକାଶ ପାଇଲେ ଇଉରୋପ ଇତିହାସ ଉପରେ ତା'ର ପ୍ରଭାବ ପଡ଼ିପାରେ।''

''ମୁଁ ନିୟମ କରୁଛି।'' ହୋମ୍ କହିଲେ।

''ମୁଁ ମଧ୍ୟ।''

ଆମର ସେହି ଅଦ୍‌ଭୁତ ଆଗନ୍ତୁକ ପୁଣି କହିଲେ, ''ମୋର ଏଇ ମୁଖାଟା ଯୋଗୁଁ କ୍ଷମା କରିବେ। ଯେଉଁ ମହାମାନ୍ୟ ଲୋକ ମୋତେ ଏ କାମରେ ନିଯୋଗ କରିଛନ୍ତି, ତାଙ୍କ ଇଚ୍ଛା ଯେ ଆପଣ ତାଙ୍କ ପ୍ରତିନିଧିଙ୍କୁ ନ ଜାଣନ୍ତୁ। ମୋର ଯେଉଁ ପରିଚୟ ଦେଲି, ସେଟା ମୋର ପ୍ରକୃତ ପରିଚୟ ନୁହେଁ।''

ନୀରସଭାବରେ ହୋମ୍ କହିଲେ, ''ତା ମୁଁ ବୁଝିପାରିଛି।''

''ପରିସ୍ଥିତି ବଡ଼ ଲଜ୍ଜାକର। ତେଣୁ ଇଉରୋପର ଏକ ରାଜପରିବାରର ଅପବାଦ ଚପାଇବା ପାଇଁ ସବୁପ୍ରକାର ସାବଧାନ ହେବାକୁ ପଡ଼ିବ। ସରଳ ଭାବରେ କହିଲେ, ଘଟଣା ସହିତ ବୋହେମିଆ ରାଜା ସଂପୃକ୍ତ।''

ଚଉକି ଉପରେ ଆଖିବୁଜି ବସି ଗୁଣୁଗୁଣୁ କରି ହୋମ୍ କହିଲେ, ''ମୁଁ ସେ କଥା ମଧ୍ୟ ବୁଝିପାରିଛି।'' ଅବସନ୍ନ ଆଉ ଆରାମରେ ହୋମ୍ ବସିଥାନ୍ତି। ଆଗନ୍ତୁକ ତାଙ୍କ ଆଡ଼କୁ ବିସ୍ମୟରେ ଚାହିଁରହିଲେ। କାରଣ ସେ ଶୁଣିଥିଲେ ଯେ ହୋମ୍ ଇଉରୋପରେ ଶ୍ରେଷ୍ଠ ଏବଂ ତୀକ୍ଷ୍ଣ ବିଚାରକ ଆଉ ଉଦ୍ୟମଶୀଳ ବ୍ୟକ୍ତି। ହୋମ୍ ଧୀରେ ଧୀରେ ଆଖି ଖୋଲି ତାଙ୍କ ମହକିଲଙ୍କୁ ଅସ୍ଥିର ଭାବରେ ଚାହିଁ କହିଲେ, ''ଯଦି ମହାରାଜା ଘଟଣାଟା ଖୋଲି କହନ୍ତି, ତେବେ ମୁଁ କିଛି ଉପଦେଶ ଦେବାଟା ସୁବିଧାଜନକ ହୁଅନ୍ତା।''

ହଠାତ୍ ଆଗନ୍ତୁକ ଚଉକିରୁ ଉଠିପଡ଼ିଲେ ଏବଂ ଅସ୍ଥିର ଭାବରେ ଘର ଭିତରେ ଏପାଖ ସେପାଖ ହେଲେ। ତା' ପରେ ହତାଶ ଭାବରେ ମୁହଁର ମୁଖାଟାକୁ ଚିରି ଫିଙ୍ଗିଦେଇ କହିଲେ, ''ଆପଣ ଠିକ୍ କହିଛନ୍ତି। ମୁଁ ନିଜେ ବୋହେମିଆର ରାଜା। ଲୁଚାଇବାକୁ କାହିଁକି ଚେଷ୍ଟା କରିବି ?''

ଧୀରଭାବରେ ହୋମ୍ କହିଲେ, ''ମହାରାଜ, ଏହା କହିବା ପୂର୍ବରୁ ମୁଁ ଜାଣିଥିଲି ଯେ ମୁଁ ବୋହେମିଆର ରାଜାଙ୍କ ସଙ୍ଗେ କଥାବାର୍ତ୍ତା କରୁଛି।''

ଆଗନ୍ତୁକ ପୁଣି ଚଉକିରେ ବସିପଡ଼ିଲେ। କପାଳରେ ହାତଦେଇ ସେ କହିଲେ, ''ଆପଣ ବୁଝିପାରୁଥିବେ, ମୁଁ ନିଜେ ଏସବୁ କାମ କରିବାରେ ଅଭ୍ୟସ୍ତ ନୁହେଁ। ତଥାପି ଘଟଣାଟା ଏମିତି ଯେ କୌଣସି ପ୍ରତିନିଧି ହାତରେ ଏ କାମ କରାଇ ହେବନାହିଁ। ତେଣୁ ଆପଣଙ୍କ ସଙ୍ଗେ ପରାମର୍ଶ କରିବା ପାଇଁ ମୁଁ ନିଜେ ଛଦ୍ମବେଶରେ ପ୍ରେଗ୍‌ରୁ ଏଠିକି ଆସିଛି।''

ପୁଣି ଥରେ ଆଖି ବୁଜି ହୋମ୍ କହିଲେ, ''ତା'ହେଲେ ପରାମର୍ଶ କରନ୍ତୁ।''

''ସଂକ୍ଷେପରେ ଘଟଣାଟା ହେଲା ଏଇଆ। ପାଞ୍ଚବର୍ଷ ତଳେ ମୁଁ ଉଆର୍‌ସ ଯାଇଥିଲି। ସେଠି ଅନେକ ଦିନ ରହିଲି। ସେଇଠି ଆଇରିନ୍

ଆଡ୍‌ଲର ସଙ୍ଗେ ମୋର ପରିଚୟ ହେଲା। ନାଁଟା ନିଶ୍ଚୟ ଆପଣଙ୍କର ଜଣା।''

ସେଇମିତି ଆଖିବୁଜି ହୋମ୍ କହିଲେ, ''ମୋ ସୂଚନା-ଖାତାରେ ନାଁଟା ଦେଖ ତ ଡାକ୍ତର।''

ଅନେକ ବର୍ଷ ହେଲା ସେ ବିଭିନ୍ନ ଲୋକ ଏବଂ ପଦାର୍ଥ ବିଷୟରେ ସଂକ୍ଷିପ୍ତ ବିବରଣୀ ଲେଖି ରଖୁଥିଲେ। ତେଣୁ କୌଣସି ଲୋକ ବା ଘଟଣା ବିଷୟରେ ସେ ଖବର କହିପାରୁଥିଲେ। ଏ ଘଟଣାରେ ମୁଁ ଦେଖିଲି, ଆଇରିନ୍ ଆଡ୍‌ଲରଙ୍କ ନାମ ତଳେ ଲେଖାଅଛି– ''୧୮୫୮ ଖ୍ରୀଷ୍ଟାବ୍ଦରେ ନିଉଜର୍‌ସିରେ ଜନ୍ମ। ଓଆରସ୍ ଇମ୍ପେରିଆଲ ନାଟ୍ୟଦଳର ପ୍ରଧାନ ଗାୟିକା। ନାଟ୍ୟଦଳରୁ ଅବ୍ୟାହତି ନେଇ ଏବେ ଲଣ୍ଡନରେ ବାସକରୁଛି।''

ହୋମ୍ କହିଲେ– ''ମୋର ଅନୁମାନ, ମହାରାଜ ଏଇ ତରୁଣୀ ସଙ୍ଗେ ଜଡ଼ିତ ହୋଇଗଲେ ଏବଂ କେତେ ଚିଠି ଲେଖିଥିଲେ। ଏବେ ସେଗୁଡ଼ା ଫେରିପାଇବାକୁ ଚାହାନ୍ତି।''

''ମୋଟାମୋଟି ସେଇଆ। କିନ୍ତୁ କିପରି''

''ଗୋପନରେ କିଛିକାଳ ବିବାହ ହୋଇଥିଲା ?''

''ନା, ମୋଟେ ନୁହେଁ।''

''କିଛି ଆଇନସଂଗତ ଲେଖା ?''

''କିଛି ନାହିଁ।''

''ତେବେ ତ ମହାରାଜାଙ୍କର ଚିନ୍ତାର କାରଣ ମୁଁ ବୁଝିପାରୁନାହିଁ ? ଯଦି ଏଇ ତରୁଣୀ ଭୟ ଦେଖାଇ ଟଙ୍କା ଆଦାୟ କରିବାକୁ କିମ୍ବା କୌଣସି ଉଦ୍ଦେଶ୍ୟରେ ଏଇ ଚିଠିକୁ ବ୍ୟବହାର କରେ, ତେବେ ତାର ମୌଳିକତା ପ୍ରମାଣ କରିବ କିପରି ?''

''ମୋ ଲେଖାଗୁଡ଼ା ଅଛି।''

''ସେଗୁଡ଼ା ଜାଲ୍ ହୋଇପାରେ।''

''ମୋ ଘରୋଇ ନୋଟ୍ କାଗଜ।''

''ଚୋରି କରାଯାଇଛି।''

''ମୋ ନିଜ ନାଁର ମୋହର।''

''ନକଲ କରାଯାଇଛି ।''

''ମୋ ଫଟୋ ।''

''କିଣି ନିଆଯାଇଛି ।''

''କିନ୍ତୁ ଫଟୋଟାରେ ଆମେ ଦୁଇଜଣ ଥିଲୁ ।''

''ତେବେ ତ ବଡ଼ ଅଡୁଆ । ମହାରାଜ ଗୋଟାଏ ବିଚାରହୀନ କାମ କରିପକାଇଛନ୍ତି ।''

''ମୁଁ ପାଗଳ ହୋଇଯାଇଥିଲି । ସେତେବେଳେ ମୁଁ ଯୁବରାଜ, ତିରିଶିବର୍ଷର ତରୁଣ ।''

''ସେ ଫଟୋଟା ଆମକୁ ଫେରିପାଇବାକୁ ହେବ ।''

''ଆମେ ଚେଷ୍ଟା କରିଛୁ, କିନ୍ତୁ ପାରିନାହୁଁ ।''

''ସେଥିପାଇଁ ଆପଣଙ୍କୁ ଖର୍ଚ୍ଚ କରିବାକୁ ପଡ଼ିବ । ଆମେ ଫଟୋଟା କିଣିଆଣିବା ।''

''ସେ ସେଟା ବିକ୍ରି କରିବ ନାହିଁ ।''

''ତେବେ ଚୋରିକରି ଆଣିବାକୁ ହେବ ।''

''ପାଞ୍ଚଥର ଚେଷ୍ଟା କରାଯାଇଛି । ଦୁଇଥର ମୋ ନିଯୁକ୍ତ ଚୋର ତା ଘର ଟିକିନିଖି କରି ଖୋଜିଛନ୍ତି । ଥରେ ସେ କେଉଁଆଡ଼େ ଯାଇଥିବାବେଳେ ତା ଜିନିଷ ବଦଳି କରିଦିଆଗଲା । ଦୁଇଥର ବାଟରେ ତାକୁ ଅଟକ କରାଯାଇଛି; କିନ୍ତୁ କିଛି ଫଳ ହୋଇନାହିଁ ।''

''କିଛି ପତ୍ତା ମିଳିଲା ନାହିଁ ?''

''କିଛି ନାହିଁ ।''

ଜୋର୍‌ରେ ହସିଉଠି ହୋମ୍ କହିଲେ, ''ଏଟା ଗୋଟେ ଅତି ସାମାନ୍ୟ ସମସ୍ୟା ।''

''କିନ୍ତୁ ମୋ ପାଇଁ ବଡ଼ ଗୁରୁତର ।'' ବଡ଼ ଦୁଃଖରେ କହିଲେ ବୋହେମିଆର ରାଜା ।

''ନିଶ୍ଚୟ ଗୁରୁତର । ଆଚ୍ଛା, ଏ ଫଟୋଟା ନେଇ ସେ କଣ କରିବାକୁ ଚାହେଁ ?''

''ମୋର ସର୍ବନାଶ କରିବାକୁ ।''

''କିନ୍ତୁ କିପରି ?''

''ଏବେ ମୋର ବିବାହ ହେବାର ଅଛି।''

''ମୁଁ ସେକଥା ଶୁଣିଛି।''

''ସ୍କାଣ୍ଡିନେଭିଆ ରାଜାଙ୍କ ଦ୍ୱିତୀୟ ଝିଅ କ୍ଲୋଟାଇଲ୍‌ଡଙ୍କ ସହିତ ମୋର ବିବାହ ସ୍ଥିର ହୋଇଛି। ତାଙ୍କ ପରିବାରରେ ବଡ଼ କଡ଼ା ନିୟମ ଓ ଶୃଙ୍ଖଳା। ସେ ନିଜେ ମଧ୍ୟ ଖୁବ୍ ସୁଶୃଙ୍ଖଳ। ମୋ ଚରିତ୍ର ବିଷୟରେ ସନ୍ଦେହର ସାମାନ୍ୟ ଆଭାସ ଏ ବିବାହ ବନ୍ଦ କରିଦେବ।''

''ଆଇରିନ୍ ଆଡ୍‌ଲର୍ କଣ କରିବାକୁ ଚାହେଁ?''

''ଫଟୋଟା ତାଙ୍କ ପାଖକୁ ପଠାଇ ଦେବାକୁ ଧମକ ଦେଉଛି। ସେ ତା' କରିବ, ମୁଁ ଜାଣେ। ଆପଣ ତାକୁ ଜାଣନ୍ତି ନାହିଁ। ତା ହୃଦୟ ଲୁହା ପରି। ତା ମୁହଁ ଯେତିକି ସୁନ୍ଦର, ମନ ସେତିକି ଟାଣ। ସେ ଯେ କଣ କରି ନପାରେ, ତା କହିହେବନାହିଁ।''

''ଆପଣ ନିଶ୍ଚିତ ଯେ ସେ ଫଟୋଟା ଏଯାଏ ପଠାଇନାହିଁ?''

''ହଁ, ମୁଁ ନିଶ୍ଚିତ।''

''କାହିଁକି?''

''କାରଣ ସେ କହିଛି, ନିର୍ବନ୍ଧ ଦିନ ସେଟା ପଠାଇବ। ନିର୍ବନ୍ଧ ଆସନ୍ତା ସୋମବାର ଦିନ ହେବ।''

''ତେବେ ତ ଆହୁରି ତିନିଦିନ ସମୟ ଅଛି। ଯାହାହେଉ ଭାଗ୍ୟ ଭଲ। ମୋର ବି ଏବେ ଗୋଟେ ଦି'ଟା ଗୁରୁତର କେଶ୍ ଅଛି। ମହାରାଜ ତ ଏବେ ଲଣ୍ଡନରେ ରହୁଛନ୍ତି?''

''ହଁ, ଲଙ୍ଗ୍‌ହାମ୍ ହୋଟେଲ୍‌ରେ ଆପଣ ମୋତେ ପାଇବେ। ସେଠି ମୋ ନାଁ କାଉଣ୍ଟ୍ ଭନ୍ କ୍ରାମ୍।''

''ତା'ହେଲେ ଆମେ କାମରେ କେତେ ଦୂର ଆଗେଇଲୁ, ମୁଁ ଆପଣଙ୍କୁ ଫୋନ୍‌ରେ ଜଣାଇବି।''

''ଦୟାକରି ସେତିକି କରିବେ। ମୁଁ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଥିବି।''

''ତା ପରେ ପଇସାପତ୍ର କଥା?''

''ଆପଣ ଯାହା ଇଚ୍ଛା ଖର୍ଚ୍ଚ କରିପାରନ୍ତି?''

''ଯାହା ଇଚ୍ଛା?''

"ସେ ଫଟୋଟା ପାଇବା ପାଇଁ ମୁଁ ମୋ ରାଜ୍ୟରୁ ଖଣ୍ଡେ ମଧ୍ୟ ଦେଇପାରେ।"

"ବର୍ତ୍ତମାନ ଖର୍ଚ୍ଚ ପାଇଁ?"

ରାଜା ତାଙ୍କ ପକେଟ୍‌ରୁ ଗୋଟେ ଚମଡ଼ା ଥଳି ବାହାରକରି ଟେବୁଲ ଉପରେ ରଖି କହିଲେ– "ଏଥିରେ ତିନିଶହ ପାଉଣ୍ଡର ସୁନା ମୁଦ୍ରା ଆଉ ସାତଶହ ପାଉଣ୍ଡର ନୋଟ ଅଛି।"

ହୋମ୍ ଖଣ୍ଡେ ରସିଦ ତାଙ୍କ ହାତକୁ ବଢ଼ାଇଦେଇ କହିଲେ, "ସେ ଭଦ୍ରମହିଳା ଆଇରିନ୍ ଆଡ୍‌ଲର୍‌ଙ୍କ ଠିକଣା?"

"ବ୍ରିଅନି ଲଜ୍, ସର୍‌ପେଣ୍ଟାଇନ୍ ରୋଡ୍, ସେଣ୍ଟଜନ୍ ଉଡ୍।"

ହୋମ୍ ଠିକଣାଟା ଟିପି ରଖିଲେ। ତା' ପରେ କହିଲେ, "ଆଉ ଗୋଟେ ପ୍ରଶ୍ନ ଆଜ୍ଞା। ଫଟୋଟା କ'ଣ କାବିନେଟ୍ ସାଇଜ୍?"

"ହଁ।"

"ତା ହେଲେ ଆପଣ ଆସନ୍ତୁ। ମୋର ବିଶ୍ୱାସ, ଖୁବ୍ ଶୀଘ୍ର ଆମେ ଆପଣଙ୍କୁ ସୁଖବର ଦେବୁ। ନମସ୍କାର।"

ରାଜା ଚାଲିଗଲା ପରେ ହୋମ୍ କହିଲେ, "ତୁମେ ଏଥର ଯାଇପାର ଉଆଟ୍‌ସନ୍! କାଲି ଉପରବେଳା ତିନିଟାବେଳକୁ ଆସିବ। ଏ ବିଷୟରେ କଥାବାର୍ତ୍ତା ହେବା।"

ଠିକ୍ ତିନିଟାବେଳେ ମୁଁ ବେକର୍ ଷ୍ଟ୍ରିଟ୍‌ରେ ପହଞ୍ଚିଲି। ହୋମ୍ ଘରେ ନ ଥିଲେ। ଶୁଣିଲି ସେ ସକାଳ ଆଠଟାବେଳୁ ବାହାରକୁ ଯାଇଛନ୍ତି। ତାଙ୍କ ଅପେକ୍ଷାରେ ମୁଁ ନିଆଁକୁଣ୍ଡ ପାଖରେ ବସିରହିଲି। ଏ ଘଟଣାଟାରେ ମୁଁ ବଡ଼ କୌତୂହଳୀ ହୋଇପଡ଼ିଥିଲି; ଅବଶ୍ୟ ଏଥିରେ କୌଣସି ଭୀଷଣ ଅପରାଧର ସୂଚନା ନ ଥିଲା। ହୋମ୍‌ଙ୍କ ଅନୁସନ୍ଧାନ ପଦ୍ଧତି ଛଡ଼ା, ଘଟଣାକୁ ଆୟତ୍ତ କରିବା, ସୂକ୍ଷ୍ମ ଅନୁଶୀଳନ କରିବା ଏବଂ କଠିନ ସମସ୍ୟା ସମାଧାନ କରିବାରେ ସେ ସିଦ୍ଧହସ୍ତ ଥିଲେ। ତେଣୁ କୌଣସି ଘଟଣାରେ ସେ ଅକୃତକାର୍ଯ୍ୟ ହେବା ମୁଁ ଚିନ୍ତା କରିପାରୁନଥିଲି।

ପ୍ରାୟ ଚାରିଟା ବାଜିବା ଉପରେ। ଘରର ଦରଜା ଖୋଲି ଜଣେ ଘୋଡ଼ା ସଇସ ଭିତରକୁ ଆସିଲା। ମଦ ପିଇଲା ପରି ଦିଶୁଥାଏ। କଦର୍ଯ୍ୟ ଚେହେରା, କଳାମୁହଁ ଏବଂ ପୋଷାକପତ୍ର ଅତି ଅପରିଷ୍କାର। ହୋମ୍‌ଙ୍କର

ଛଦ୍ମବେଶ ଧାରଣ କରିବା ଶକ୍ତି ମୋତେ ବେଶ୍ ଜଣା। ତଥାପି ସେ ଘୋଡ଼ା ସଇସ ହୋମ୍ ବୋଲି ଚିହ୍ନିବାକୁ ମୁଁ ତାଙ୍କୁ ତିନିଥର ନିରୀକ୍ଷଣ କଲି। ଟିକିଏ ମୁଣ୍ଡ ହଲାଇ ଦେଇ ସେ ଶୋଇବାଘର ଭିତରକୁ ଚାଲିଗଲେ। ପାଞ୍ଚ ମିନିଟ୍ ପରେ ପରିଷ୍କାର ପୋଷାକ ପିନ୍ଧି ଭଦ୍ରବେଶରେ ବାହାରିଆସିଲେ। ନିଆଁଆଡ଼କୁ ଗୋଡ଼ ଲମ୍ବାଇ ସେ କିଛି ସମୟ ଖୁବ୍ ହସିଲେ। ତା'ପରେ କିଛି କହୁ କହୁ ପୁଣି ଅଟକିଗଲେ, ଆଉ ପୁଣି ଜୋରରେ ହସିଲେ। ଶେଷରେ ହାଲିଆ ହୋଇ ଚଉକି ଉପରେ ବସିପଡ଼ିଲେ।

''କଥା କ'ଣ ?'' ମୁଁ ପଚାରିଲି।

''ବେଶ୍ ମଜା କଥା। ଆଚ୍ଛା, ଅନୁମାନ କରିପାରିବ, ସକାଳ ଓଳିସାରା ମୁଁ କ'ଣ କରୁଥିଲି !''

''ମୁଁ କିଛି ଭାବିପାରୁନାହିଁ। ବୋଧହୁଏ ତୁମେ ଆଇରିନ୍ ଆଡ୍‌ଲର୍ ଘର କିମ୍ବା ତା ଚାଲିଚଳନ ଉପରେ ନଜର ଦେଇଥିବ।''

''ଠିକ୍ ସେଇଆ; କିନ୍ତୁ ପରିଣାମଟା ଅସ୍ୱାଭାବିକ ହେଲା। କହୁଛି ଶୁଣ। ଠିକ୍ ଆଠଟା ପରେ ପରେ ମୁଁ ଘୋଡ଼ା ସଇସ ବେଶରେ ଘରୁ ବାହାରିଗଲି। ଏଇ ସଇସମାନଙ୍କ ଭିତରେ ମିଳାମିଶା ଆଉ ପରସ୍ପର ପ୍ରତି ବେଶ୍ ସହାନୁଭୂତି ଅଛି। ତାଙ୍କ ସାଥିରେ ମିଶିଲେ ତୁମେ ସବୁ କିଛି ଜାଣିପାରିବ। ମୁଁ ଖୁବ୍ ଶୀଘ୍ର ବ୍ରିଅନି ଲଜ୍ ପାଇଗଲି। ଘରଟା ଛୋଟ ଆଉ ବେଶ୍ ସୁନ୍ଦର। ପଛ ପାଖରେ ଗୋଟେ ବଗିଚା। ଘର ରାସ୍ତା ପାଖକୁ ଲାଗି ଦୋମହଲା। ଦରଜାରେ 'ଚବ୍' ତିଆରି ତାଲା। ଡାହାଣପାଖେ ବଡ଼ ବୈଠକଘର। ସାଜସଜା ଖୁବ୍ ଭଲ। ଲମ୍ବା ଝରକା ମେଜିଆକୁ ଲାଗିଛି। ଝରକାର ଜିଂଜିର ଗୋଟେ ଛୋଟ ପିଲା ବି ଫିଟାଇଦେଇ ପାରିବ। ପଛପାଖେ ସେମିତି କିଛି ଲକ୍ଷ୍ୟ କରିବାର ନାହିଁ। କେବଳ ବାଟପାଖ ଝରକାଟା ଘୋଡ଼ାଗାଡ଼ି ରହିବା ଘରର ଛାତକୁ ଲାଗିଛି। ମୁଁ ଘରଟାର ଚାରିପାଖ ବୁଲି ଭଲଭାବେ ଦେଖିଲି; କିନ୍ତୁ ଆଉ ବିଶେଷ କିଛି ଦେଖିବାର ନଥିଲା।''

ତା'ପରେ ମୁଁ ସେଇ ଗଳି ରାସ୍ତାର ଏପଟ ସେପଟ ବୁଲିଲି। ବୁଲୁ ବୁଲୁ ଗୋଟେ ଗଳିରେ ଗୋଟେ ଘୋଡ଼ାଶାଳ ଦେଖିଲି। ବଗିଚାର ଗୋଟେ କାନ୍ଥକୁ ଲାଗି ଏଇ ଘୋଡ଼ାଶାଳ। ସଇସମାନେ ଘୋଡ଼ାଗୁଡ଼ାକୁ ସଫା

କରୁଥିଲେ। ମୁଁ ତାଙ୍କ ସାଥିରେ ମିଶି କାମରେ ସାହାଯ୍ୟ କଲି। ତା ବଦଳରେ ସେମାନେ ମୋତେ ଦୁଇ ପେନ୍ସ୍, ଅଧଗ୍ଲାସେ ମଦ, ଆଉ କିଛି ଧୂଆଁପତ୍ର ଦେଲେ। ତା'ଛଡ଼ା ମିସ୍ ଆଡ୍‌ଲର୍ ବିଷୟରେ କେତେକ ଖବର ମଧ ପାଇଲି।

''କି ଖବର ପାଇଲ ?''

''ସେ ସେଅଞ୍ଚଳର ସମସ୍ତଙ୍କ ମୁଣ୍ଡ ନୁଆଇଁ ଦେଇଛି। ସେ ଏ ପୃଥିବୀରେ ସବୁଠୁ ସୁନ୍ଦରୀ। ଏକା ନିରୋଳା ରହେ। ସଙ୍ଗୀତମେଳାରେ ଗୀତ ଗାଏ। ପ୍ରତିଦିନ ପାଞ୍ଚଟାବେଳେ ଗାଡ଼ିରେ ବସି ବୁଲିଯାଏ। ଠିକ୍ ସାତଟାବେଳେ ଫେରି ଖିଆପିଆ କରେ। ଅନ୍ୟ ସମୟରେ ପ୍ରାୟ ବାହାରକୁ ଯାଏନାହିଁ; କେବଳ ଗୀତ ଗାଇବା ପାଇଁ ବେଳେବେଳେ ଯାଏ। ଜଣେ ମାତ୍ର ଭଦ୍ରଲୋକ ତା ନିକଟକୁ ଆସନ୍ତି। ସେ ହେଲେ ଇନରଟେମ୍ପଲ୍‌ର ମିଷ୍ଟର୍ ଗଡ୍‌ଫ୍ରେ ନର୍‌ଟନ୍। ସେ ଖୁବ୍ ସୁନ୍ଦର। ପ୍ରତିଦିନ ଥରେ ବା ଦୁଇଥର ଆସନ୍ତି। ଘୋଡ଼ାଗାଡ଼ିବାଲା ସାଥିରେ ବନ୍ଧୁତା କଲେ କେତେ ସୁବିଧା, ଦେଖ। ସେମାନେ ଅନେକ ଥର ତାଙ୍କୁ ଗାଡ଼ିରେ ନେବା ଆଣିବା କରି ସବୁ କଥା ଜାଣିଛନ୍ତି। ସେମାନଙ୍କଠାରୁ ଏସବୁ ଶୁଣିବା ପରେ ମୁଁ ପୁଣି ଥରେ ବ୍ରିଅନି ଲଜ୍ ପାଖେ ଚଲାବୁଲା କଲି, ଆଉ ମୋ କାମର ଯୋଜନା ଭାବିବାକୁ ଲାଗିଲି।

ଘଟଣାଟାରେ ଏଇ ଗଡ୍‌ଫ୍ରେ ନର୍‌ଟନ୍‌ର ନିଶ୍ଚୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ଅଛି। ସେ ଆଗେ ଓକିଲାତି କରୁଥିଲେ। ସେଇଟା ହେଲା ବଡ଼ ଅଶୁଭସୂଚକ। ସେ ଦୁଇଜଣଙ୍କର ସମ୍ବନ୍ଧ କଣ, ସେ କାହିଁକି ବରାବର ଆଡ୍‌ଲର୍ ପାଖକୁ ଆସନ୍ତି ? ଆଡ୍‌ଲର୍ ତାଙ୍କର ମହକିଲ, ନା ବନ୍ଧୁ, ନା ଗୃହକର୍ତ୍ତ୍ରୀ ? ଯଦି ପ୍ରଥମଟା ହୋଇଥାଏ ତେବେ ସେ ନିଶ୍ଚୟ ଫଟୋଟା ରଖିବା ପାଇଁ ନର୍‌ଟନ୍‌ଙ୍କୁ ଦେଇଥିବ। ଯଦି ଶେଷଟା ହୋଇଥାଏ, ତେବେ ଦେବାର ସମ୍ଭାବନା ନାହିଁ। ମୁଁ ଏବେ ବଡ଼ ଅସୁବିଧାରେ ପଡ଼ିଲି। ବ୍ରିଅନି ଲଜ୍‌ରେ ମୋ କାମ କରିବି କି ଏଇ ଭଦ୍ରଲୋକ ଘର ଅନୁସନ୍ଧାନ କରିବି ? ମୋ ଅନୁସନ୍ଧାନର ପରିସର ବଢ଼ିଗଲା। ତୁମେ ମୋ ଅସୁବିଧାଟା ବୁଝିପାରୁଥିବ।''

''ହଁ, ମୁଁ ବେଶ୍ ବୁଝିପାରୁଛି।''

‘‘କଣ କରିବି ମନେ ମନେ ଭାବୁଛି, ଏତିକିବେଳେ ଗୋଟାଏ ଗାଡ଼ି ଆସି ବ୍ରିଅନି ଲଜ୍ ପାଖରେ ଅଟକିଗଲା । ଗାଡ଼ି ଭିତରୁ ଜଣେ ଭଦ୍ରଲୋକ ଓହ୍ଲାଇଲେ । ତାଙ୍କ ଚେହେରାରୁ ଜାଣିଲି ସେ ଗଡ୍‌ଫ୍ରେ ନର୍‌ଟନ୍ । ଗାଡ଼ିବାଲାକୁ ଅପେକ୍ଷା କରିବାକୁ କହି ସେ ଚରଚର ହୋଇ ଘରଭିତରକୁ ପଶିଗଲେ । ଜଣାଗଲା ଯେମିତି ଏଟା ତାଙ୍କର ନିଜ ଘର । ଘରଭିତରେ ସେ ପ୍ରାୟ ଅଧଘଣ୍ଟାଏ ରହିଲେ । ବୈଠକଖାନା ଝରକାବାଟେ ମୁଁ ତାଙ୍କୁ ଦେଖିପାରୁଥାଏ । ସେ ହାତ ହଲାଇ ଉତ୍ତେଜିତ ହେଲାପରି କଣ କହୁଥାନ୍ତି । ଆଇରିନ୍ ଆଡ୍‌ଲର୍ କିନ୍ତୁ ମୋଟେ ଦିଶୁନଥାଏ । ଅଧଘଣ୍ଟାଏ ପରେ ନର୍‌ଟନ୍ ବାହାରିଆସିଲେ । ପକେଟ୍‌ରୁ ଗୋଟାଏ ସୁନାଘଣ୍ଟା ବାହାର କରି ଦେଖିଲେ । ତା’ପରେ ଗାଡ଼ିବାଲାକୁ କହିଲେ, ‘ଆଖିବୁଜି ଜୋର୍‌ରେ ଚଲା । ଆଗେ ରିଜେଣ୍ଟ୍ ଷ୍ଟ୍ରୀଟ୍‌ର ଗ୍ରସ୍ ଆଉ ହାଙ୍କିନ ଦୋକାନକୁ, ତା’ପରେ ଏଜ୍‌ଓୟାର ରୋଡ୍ ସେଣ୍ଟ୍ ମୋନିକା ଚର୍ଚ୍ଚକୁ । କୋଡ଼ିଏ ମିନିଟ୍‌ରେ ପହଞ୍ଚାଇ ଦେଲେ ଅଧ ଗିନି ବକ୍‌ସିସ୍ ପାଇବୁ ।’

‘‘ସେ ଚାଲିଗଲେ । ମୁଁ ତାଙ୍କ ପିଛା ଧରିବି କି ନାହିଁ ଭାବୁଛି, ଏତିକିବେଳେ ଆଉ ଗୋଟେ ଗାଡ଼ି ଆସିଲା । ଗାଡ଼ି ରହୁ ନରହୁଣୁ ଆଡ୍‌ଲର୍ ଘରୁ ବାହାରିଆସିଲା । ମୁଁ ମୁହୂର୍ତ୍ତକ ପାଇଁ ତା ମୁହଁ ଦେଖିପାରିଲି । କି ସୁନ୍ଦର ମୁହଁ! ଯେ କେହି ତା ପାଇଁ ଜୀବନ ଦେଇଦେବ । ଗାଡ଼ିବାଲାକୁ ସେ କହିଲା, ‘ସେଣ୍ଟ୍ ମୋନିକା ଚର୍ଚ୍ଚ । କୋଡ଼ିଏ ମିନିଟ୍‌ରେ ପହଞ୍ଚିଲେ ଅଧ କ୍ରାଉନ୍ ବକ୍‌ସିସ୍ ।’ ଏ ସୁଯୋଗ ଛାଡ଼ିବାର ନୁହେଁ । ମୁଁ ତା ପଛରେ ଦୌଡ଼ିବି କି ତା ଗାଡ଼ିପଛରେ ବସିଯିବି ଭାବୁଛି, ଏତିକିବେଳେ ଗୋଟାଏ ଗାଡ଼ି ଆସିଗଲା । ଗାଡ଼ି ଭିତରକୁ ଡେଇଁପଡ଼ି ମୁଁ କହିଲି, ‘ସେଣ୍ଟ୍ ମୋନିକା ଚର୍ଚ୍ଚ । କୋଡ଼ିଏ ମିନିଟ୍‌ରେ ପହଞ୍ଚିଲେ ଅଧ ସଭରେନ୍ ବକ୍‌ସିସ୍ ।’ ବାରଟା ବାଜିବାକୁ ଆଉ ପଚିଶ ମିନିଟ୍ ବାକି । ଘଟଣାଟା କ’ଣ ମୁଁ ଅନୁମାନ କରିନେଲି । ମୋ ଗାଡ଼ି ଖୁବ୍ ଜୋର୍‌ରେ ଚାଲିଲା; କିନ୍ତୁ ଅନ୍ୟ ଗାଡ଼ି ଦୁଇଟା ଆଗରୁ ପହଞ୍ଚିଯାଇଥିଲା । ଗାଡ଼ିବାଲାକୁ ପଇସା ଦେଇ ମୁଁ ଚର୍ଚ୍ଚ ଭିତରକୁ ଦୌଡ଼ିଗଲି । ମୁଁ ଯେଉଁ ଦୁଇଜଣଙ୍କ ପିଛା ଧରିଥିଲି, ସେ ଏବଂ ଜଣେ ଧର୍ମଯାଜକଙ୍କ ବ୍ୟତୀତ ଆଉ କେହି ନ ଥିଲେ । ଧର୍ମଯାଜକ ତାଙ୍କ କଥାର ପ୍ରତିବାଦ କଲାପରି ଜଣାଯାଉଥିଲା । ବେଦି ଆଗରେ ତିନିଜଣଯାକ

ଠିଆହୋଇଥାନ୍ତି। ମୁଁ ଜଣେ ସାଧାରଣ ଲୋକପରି ଗୋଟାଏ କଡ଼କୁ ଚାଲିଲି। ହଠାତ୍ ତିନିଜଣଯାକ ମୋ ଆଡ଼କୁ ଚାହିଁଲେ ଏବଂ ଗଡ୍‌ଫ୍ରେ ନରଟନ୍ ମୋ ନିକଟକୁ ଧାଇଁଆସିଲେ। 'ଧନ୍ୟ ପ୍ରଭୁ!' ସେ କହିଲେ, 'ଆପଣ ହେଲେ ବି ଚଳିବ। ଆସନ୍ତୁ।'

'କଥା କ'ଣ ?' ମୁଁ ପଚାରିଲି।

'ଆସନ୍ତୁ, ଆସନ୍ତୁ। ମୋତେ ତିନି ମିନିଟ୍ ସମୟ; ନ ହେଲେ କାମଟା ଆଇନସଙ୍ଗତ ହେବନାହିଁ।'

''ସେ ମୋତେ ଏକରକମ ଟାଣି ଟାଣି ବେଦି ପାଖକୁ ନେଇଗଲେ। ମୁଁ କିଛି ବୁଝିପାରୁନଥାଏ। ମୋ କାନରେ ଧର୍ମଯାଜକ ଚୁପ୍‌ଚୁପ୍ କ'ଣ କହିଗଲେ। ମୋ ଅଜାଣତରେ ମୋ ମୁହଁରୁ ସେ ଶବ୍ଦସବୁ ବାହାରିଗଲା। ଏଇପରି ଭାବରେ ଗଡ୍‌ଫ୍ରେ ନର୍‌ଟନ୍ ଆଉ କୁମାରୀ ଆଇରିନ୍ ଆଡ୍‌ଲର୍‌ଙ୍କ ବିବାହ-ବନ୍ଧନର ମୁଁ ସାକ୍ଷୀ ହୋଇଗଲି। ମୁହୂର୍ତ୍ତକ ଭିତରେ ସବୁ ହୋଇଗଲା। ମୋ ଜୀବନରେ ଏମିତି ଅସ୍ୱାଭାବିକ ପରିସ୍ଥିତି କେବେ ଆସିନଥିଲା। ଦୁଇଜଣଯାକ ମୋତେ ଧନ୍ୟବାଦ ଦେଲେ, ଆଉ ଭଦ୍ରମହିଳା ମୋତେ ଗୋଟାଏ ସଭ୍‌ରେନ୍ ମଧ୍ୟ ଦେଲେ। ସେଟା ମୋ ଘଣ୍ଟା ଚେନ୍‌ରେ ଲଗାଇବି ବୋଲି ମୁଁ ଭାବିଛି। ସେ ହେବ ଏ ଘଟଣାର ଗୋଟାଏ ସ୍ମୃତି।''

ଏ କଥା ଶୁଣି ମୁଁ କହିଲି, ''ଘଟଣାଟା ଅତି ଅପ୍ରତ୍ୟାଶିତ ! ତା' ପରେ କଣ ହେଲା ?''

''ମୁଁ ଦେଖିଲି ମୋ ଯୋଜନାରେ ଏକ ବିରାଟ ବାଧା ପହଞ୍ଚିଗଲା। ଜଣାଗଲା ସେ ଦୁହେଁ ଖୁବ୍ ଶୀଘ୍ର ଏଠାରୁ ଚାଲିଯାଇପାରନ୍ତି। ତେଣୁ ମୋତେ ତୁରନ୍ତ କିଛି କରିବାକୁ ପଡ଼ିବ। ଯାହାହେଉ ଚର୍ଚ୍ଚ ଗେଟ୍ ପାଖରେ ସେମାନେ ପରସ୍ପରଠାରୁ ବିଦାୟ ନେଇ ନିଜ ନିଜ ରହିବା ଘରକୁ ଚାଲିଗଲେ; ଆଉ ମୁଁ ମୋର ବ୍ୟବସ୍ଥା କରିବାକୁ ଚାଲିଆସିଲି।''

''କି ବ୍ୟବସ୍ଥା ?''

''କିଛି ଖିଆପିଆ। ଦିନସାରା କାମରେ ବ୍ୟସ୍ତ ରହି ମୁଁ ଖାଇବା କଥା ପାସୋରି ଦେଇଥିଲି। ସଂଧ୍ୟାରେ ମଧ୍ୟ ମୁଁ ଆହୁରି କାର୍ଯ୍ୟବ୍ୟସ୍ତ ରହିବି।'' ଏହା କହି ସେ କଲିଙ୍ଗ୍ ବେଲ୍ ବଜାଇଲେ। ତା'ପରେ କହିଲେ, ''ଆଜି ସଂଧ୍ୟାରେ ମୁଁ ତୁମର ସାହାଯ୍ୟ ଲୋଡ଼ିପାରେ ଡାକ୍ତର !''

''ତାହେଲେ ମୁଁ ତ ଖୁସି ହେବି।''

''କୌଣସି ବେନିୟମ କାମ କରିବାକୁ ତୁମେ କିଛି ଭାବିବ ନାହିଁ ତ ?''

''ମୋଟେ ନୁହେଁ।''

''ଦର୍କାର ପଡ଼ିଲେ ଆରେଷ୍ଟ ହେବାକୁ ?''

''ଭଲ କାମ ପାଇଁ ହେଲେ ଚିନ୍ତା ନାହିଁ।''

''କାମଟା ତ ଅତି ଭଲ।''

''ତେବେ ମୁଁ ତୁମ ପାଖେ ପାଖେ।''

''ମୁଁ ନିଶ୍ଚିତ ଥିଲି ଯେ ତୁମ ଉପରେ ଭରସା ରଖିପାରେ।''

''କିନ୍ତୁ କଣ କରିବାକୁ ହେବ ?''

ଏ ଭିତରେ ମିସେସ୍ ଟର୍‌ନର୍ ଖାଇବା ଜିନିଷ ଆଣି ଟେବୁଲ୍ ଉପରେ ରଖିଦେଇ ଗଲେ। ସାଙ୍ଗେ ସାଙ୍ଗେ ଖାଇବା ଆରମ୍ଭ କରି ହୋମ୍ କହିଲେ, ''ଖାଉ ଖାଉ ମୁଁ ତୁମ ସାଥିରେ ସବୁକଥା ଆଲୋଚନା କରିନେବି; କାରଣ ସମୟ ବେଶି ନାହିଁ। ଏବେ ପାଞ୍ଚଟା ବାଜିବା ଉପରେ। ଦୁଇଘଣ୍ଟା ଭିତରେ ଆମକୁ କର୍ମସ୍ଥାନକୁ ଯିବାକୁ ପଡ଼ିବ। କୁମାରୀ ଆଇରିନ୍ ଆଡ୍‌ଲର୍, ବରଂ ଶ୍ରୀମତୀ, ସାତଟାବେଳକୁ ଫେରିବେ। ଆମେ ତାଙ୍କୁ ଭେଟିବାପାଇଁ ବ୍ରିଅନି ଲଜ୍ ପାଖରେ ଥିବା ଦର୍କାର।''

''ତା'ପରେ।''

''ସେକଥା ମୁଁ ବୁଝିବି। ଯାହା ହେବ ମୁଁ ତାର ବ୍ୟବସ୍ଥା କରିଛି। ତୁମକୁ କେବଳ ଗୋଟେ କଥା କହିରଖୁଛି। ସେଠି ଯାହା କିଛି ଘଟୁନା କାହିଁକି, ତୁମେ ସେଥିରେ ପାଟି ଫିଟାଇବ ନାହିଁ। ବୁଝିପାରିଲ ?''

''ମୁଁ ତେବେ ନିରପେକ୍ଷ ରହିବି ?''

''ସେଠି ସମ୍ଭବତଃ କିଛି ଅପ୍ରୀତିକର ଘଟଣା ଘଟିପାରେ। ତୁମେ ତା ଭିତରେ ପଶିବ ନାହିଁ। ସେ ଘଟଣା ପରେ ମୋତେ ଆଇରିନ୍ ଆଡ୍‌ଲର୍‌ଙ୍କ ଘର ଭିତରକୁ ନିଆଯିବ। ଚାରି ପାଞ୍ଚ ମିନିଟ୍ ପରେ ବୈଠକଖାନାର ଝରକା ଖୋଲାଯିବ। ତୁମେ ସେଇ ଝରକା ପାଖରେ ଆସି ରହିବ।''

''ହୁଁ।''

''ତୁମେ ମୋତେ ଦେଖିପାରିବ। ମୋତେ ଭଲଭାବେ ଲକ୍ଷ୍ୟ କରୁଥିବ।''

''ହୁଁ।''

''ମୁଁ ଯେତେବେଳେ ଏଇପରି ହାତ ଟେକିବି, ତୁମେ ଘର ଭିତରକୁ ଗୋଟାଏ ଜିନିଷ ଫିଙ୍ଗିଦେବ। ସେଟା ମୁଁ ତୁମକୁ ଦେଇଥିବି। ଫିଙ୍ଗିବା ସାଙ୍ଗେ ସାଙ୍ଗେ ତୁମେ ନିଆଁ ନିଆଁ ବୋଲି ପାଟିକରି ଉଠିବ। ବୁଝିପାରୁଛ ତ ?''

''ବେଶ୍ ଭଲଭାବରେ।''

''ଜିନିଷଟା ସେମିତି ଭୟଙ୍କର ନୁହେଁ।'' ପକେଟ୍‌ରୁ ଲମ୍ବା ସିଗାରେଟ୍ ପରି ଗୋଟେ ଜିନିଷ ବାହାର କରି ସେ କହିଲେ, ''ଏଇଟା ଗୋଟେ ସାଧାରଣ ଧୂଆଁବାଣ। ଏଇଟା ପକାଇଦେଲେ ଆପେ ଆପେ ଏଥିରୁ ନିଆଁ ବାହାରିପଡ଼ିବ। ତୁମ କାମ କେବଳ ସେତିକି। ତୁମେ ନିଆଁ ନିଆଁ ବୋଲି ପାଟି କଲେ ଆହୁରି ଅନେକ ଲୋକ ବି ପାଟି କରିବେ। ସେତିକିବେଳେ ତୁମେ ଗଳିର ଶେଷମୁଣ୍ଡକୁ ଚାଲିଯିବ। ଦଶ ମିନିଟ୍ ଭିତରେ ମୁଁ ତୁମ ପାଖେ ପହଞ୍ଚିବି। ସବୁ ଭଲରକମ ବୁଝିଲ ତ ?''

''ହଁ, ମୁଁ ନିରପେକ୍ଷ ରହିବି, ଝରକା ନିକଟକୁ ଯିବି, ତୁମକୁ ଲକ୍ଷ୍ୟ କରିବି, ତୁମଠାରୁ ସଙ୍କେତ ପାଇବା ମାତ୍ରେ ଏଇଟା ଘର ଭିତରକୁ ଫିଙ୍ଗିଦେଇ ନିଆଁ ନିଆଁ ବୋଲି ପାଟି କରିବି, ଆଉ ତା'ପରେ ଗଳିମୁଣ୍ଡକୁ ଯାଇ ତୁମକୁ ଅପେକ୍ଷା କରିବି।''

''ବେଶ୍, ସେତିକି।''

''ତା'ହେଲେ ତୁମେ ମୋ ଉପରେ ଭରସା ରଖିପାର।''

''ଖୁବ୍ ଭଲ। ଏଥର ବେଳ ହୋଇଗଲାଣି। ମୁଁ ମୋର ନୂଆ ଅଭିନୟ ଲାଗି ସଜ ହୋଇଯାଏ।''

ସେ ତାଙ୍କ ଶୋଇବାଘରକୁ ଚାଲିଗଲେ। କିଛି ସମୟ ପରେ ସେ ଜଣେ ଧର୍ମଯାଜକର ଛଦ୍ମବେଶରେ ବାହାରିଆସିଲେ। କେବଳ ତାଙ୍କ ପୋଷାକପତ୍ର ଯେ ବଦଳିଗଲା ତା ନୁହେଁ, ଜଣାଗଲା ତାଙ୍କ ହାବଭାବ, ଚାଲିଚଳଣ, ଏପରିକି ଅନ୍ତର ମଧ୍ୟ ବଦଳିଯାଇଛି।

ଛଅଟା ପନ୍ଦର ମିନିଟ୍‌ବେଳେ ଆମେ ବେକର୍ ଷ୍ଟ୍ରୀଟ୍‌ରୁ ବାହାରିଲୁ। ପାଞ୍ଚ ମିନିଟ୍ ପରେ ସର୍ପେଣ୍ଟାଇନ୍ ରାସ୍ତାରେ ପହଞ୍ଚିଲୁ। ସେତେବେଳକୁ

ରାସ୍ତାର ବତି ଲାଗିଗଲାଣି । ଆଇରିନ୍ ଆଡ୍‌ଲରଙ୍କର ଫେରିବାକୁ ଆମେ ଅପେକ୍ଷା କରି ବ୍ରିଅନି ଲଜ୍ ସାମନାରେ ଏପାଖ ସେପାଖ ଟହଲ କଲୁ । ସେଇ ଛୋଟ ଗଳିରାସ୍ତାରେ କିନ୍ତୁ ଅନେକ ଲୋକ ଥିଲେ । ଗୋଟାଏ କଣରେ ଦଳେ ଲୋକ ଛିଣ୍ଡା ମଇଳା ପୋଷାକ ପିନ୍ଧି, ଧୂଆଁ ଟାଣି ହସୁଥାନ୍ତି । ଜଣେ ଶାଣ ଦେବା ଲୋକ ତା ଚକ ଧରି ଠିଆହୋଇଥାଏ । ଦି'ଜଣ ଜଗୁଆଳ ଲୋକ ଜଣେ ନର୍ସ ସାଙ୍ଗରେ ଥଟ୍ଟା-ତାମସାରେ ଲାଗିଥାନ୍ତି । ଆଉ କେତ୍ତେ ଯୁବକ ଭଲ ଭଲ ପୋଷାକ ପିନ୍ଧି, ସିଗାରେଟ୍ ଟାଣି ଏପାଖ ସେପାଖ ବୁଲୁଥାନ୍ତି ।

ଆମେ ଘର ସାମ୍‌ନାରେ ବୁଲୁ ବୁଲୁ ହୋମ୍ କହିଲେ, ''ଦେଖ ଉଆଟ୍‌ସନ୍, ଏଇ ବିବାହଯୋଗୁଁ ଘଟଣାଟା ବେଶ୍ ସହଜ ହୋଇଯାଇଛି । ସେ ଫଟୋଟା ଏବେ ଏକ ଦି'ଧାରୁଆ ଅସ୍ତ୍ରର କାମ କରିବ । ଆମ ମହକିଲ ଯେମିତି ଭୟ କରୁଛନ୍ତି ଯେ କାଳେ ତାଙ୍କ ରାଜକୁମାରୀ ଫଟୋଟା ଦେଖିପକାଇବେ, ଆଇରିନ୍ ଆଡ୍‌ଲର୍ ମଧ୍ୟ ସେମିତି ଭୟ କରିବେ ଯେ କାଳେ ତାଙ୍କ ସ୍ୱାମୀ ଫଟୋଟା ଦେଖିପକାଇବେ । ବର୍ତ୍ତମାନ ଫଟୋଟା କେଉଁଠି ଅଛି ଆମେ ଜାଣିବା କଥା ।''

''କେଉଁଠି ଥାଇପାରେ ।''

''ଫଟୋଟା ସେ ସବୁବେଳେ ପାଖରେ ଧରି ବୁଲିବା ସମ୍ଭବ ନୁହେଁ । କାରଣ ସେଟା କାବିନେଟ୍ ସାଇଜ୍ ଫଟୋ, ଆଉ ଏତେ ବଡ଼ ଫଟୋଟା ଜଣେ ନାରୀର ପୋଷାକ ଭିତରେ ଲୁଚାଇ ହେବ ନାହିଁ । ତା'ଛଡ଼ା ସେ ଜାଣନ୍ତି ଯେ ବାଟଘାଟରେ ତାଙ୍କୁ ଆକ୍ରମଣ କରି ଫଟୋଟା ନେଇଯିବା ରାଜାଙ୍କ ପକ୍ଷରେ ସହଜ । ଦୁଇଥର ମଧ୍ୟ ତା ହୋଇଯାଇଛି । ତେଣୁ ଆମେ ଧରିନେବା ଯେ ସେ ଫଟୋଟା ସାଥିରେ ଧରି ବୁଲୁନାହାନ୍ତି ।''

''ତେବେ କେଉଁଠି ରଖିଛନ୍ତି ?''

''ତାଙ୍କ ବ୍ୟାଙ୍କରେ କିମ୍ୱା ତାଙ୍କ ଓକିଲଙ୍କ ପାଖରେ ଥାଇପାରେ । ଏ ଦୁଇଟା ସମ୍ଭାବନାରୁ କୌଣସିଟା ମୋ ମନକୁ ପାଉନାହିଁ । ନାରୀମାନେ ସାଧାରଣତଃ ତାଙ୍କ ଗୋପନୀୟ କାମ ନିଜେ ନିଜେ କରିଥାନ୍ତି । ଫଟୋଟା ସେ ନିଜେ ନ ରଖି ଅନ୍ୟ କାହାକୁ କାହିଁକି ଦେବେ ? ସେ ନିଜ ଉପରେ ଆସ୍ଥା ରଖିପାରନ୍ତି । ତା'ଛଡ଼ା ସେ ଅଳ୍ପ ଦିନ ଭିତରେ ଫଟୋଟାକୁ କାମରେ

ଲଗାଇବେ ବୋଲି ସ୍ଥିର କରିଛନ୍ତି। ତେଣୁ ସେଟା ସେ ଏମିତି ଜାଗାରେ ରଖିଥିବେ, ଯେଉଁଠୁ ହଠାତ୍ ପାଇପାରିବେ। ଫଟୋଟା ନିଶ୍ଚୟ ତାଙ୍କ ନିଜ ଘରେ ଥିବ।''

''କିନ୍ତୁ ତାଙ୍କ ଘର ଦୁଇଥର ସିନ୍ଧି କରାହୋଇ ଖୋଜାଯାଇଛି।''

''ହଁ, କେମିତି ଖୋଜାଯାଏ ସେମାନେ ଜାଣି ନ ଥିଲେ।''

''ତୁମେ ତା'ହେଲେ କେମିତି ଖୋଜିବ ?''

''ମୁଁ ଖୋଜିବି ନାହିଁ।''

''ତେବେ ?''

''ସେ ମୋତେ ଦେଖାଇଦେବେ।''

''ଦେଖାଇବାକୁ ସେ ମନାକରିବେ ?''

''ସେ ମନା କରି ପାରିବେ ନାହିଁ। ଏଇ ତ ଗାଡ଼ିଶବ୍ଦ ଶୁଭୁଛି। ଦେଖ, ମୁଁ ଯାହା କହିଲି ଅକ୍ଷରେ ଅକ୍ଷରେ ପାଳନ କରିବ।''

ରାସ୍ତାର ମୋଡ଼ରେ ଗୋଟାଏ ଗାଡ଼ିର ଆଲୁଅ ଦେଖାଗଲା। ଅଳ୍ପକ୍ଷଣ ପରେ ଘୋଡ଼ାଗାଡ଼ିଟି ଆସି ବ୍ରିଅନି ଲଜ୍ ସାମନାରେ ରହିଲା। ବାରବୁଲା ଦଳରୁ ଗୋଟାଏ ଲୋକ ଗାଡ଼ିର ଦରଜା ଖୋଲିବାକୁ ଧାଇଁଆସିଲା। ତାର ଆଶା, ମାଲିକଙ୍କଠାରୁ କିଛି ମିଳିବ। ଆଉ ଗୋଟେ ବାରବୁଲା ସେଇ ଆଶାରେ ଧାଇଁଆସି ପ୍ରଥମ ଲୋକକୁ ପେଲିଦେଲା। ତାହୁଁ ତାହୁଁ ଦି'ଜଣଙ୍କ ଭିତରେ କଳିଗୋଳ ଲାଗିଗଲା। ଅନ୍ୟ ବାରବୁଲାଯାକ ଆସି ଜୁଟିଗଲେ। ଜଗୁଆଳି ଦୁଇଜଣ ଆଉ ଶାଣଦେବା ଲୋକଟା ଆସି ଜଣ ଜଣଙ୍କ ପଟ ନେଇ ଭୀଷଣ ଗଣ୍ଡଗୋଳ ଆରମ୍ଭ କରିଦେଲେ। ପାଟିତୁଣ୍ଡରୁ ମାଡ଼ଗୋଳ ଆରମ୍ଭ ହୋଇଗଲା। ଭଦ୍ରମହିଳାଜଣକ ଏମାନଙ୍କ ମଝିରେ ରହିଗଲେ। ଲୋକଗୁଡ଼ାଙ୍କ ଭିତରେ ପିଟାପିଟି ବି ଚାଲିଲା। ଭଦ୍ରମହିଳାଙ୍କୁ ରକ୍ଷାକରିବା ପାଇଁ ହୋମ୍ସ ଭିତରକୁ ଦୌଡ଼ିଗଲେ। ସେଠି ପହଞ୍ଚିବାମାତ୍ରେ ସେ ହଠାତ୍ ଚିତ୍କାର କରି ତଳେ ପଡ଼ିଗଲେ, ଆଉ ତାଙ୍କ ମୁହଁରୁ ଧାର ଧାର ରକ୍ତ ବୋହିଗଲା। ଏ ଅବସ୍ଥା ଦେଖି ଲୋକଗୁଡ଼ା ଯେ ଯୁଆଡ଼େ ପଳାଇଲେ। ପାଖରେ କେତେକ ଭଦ୍ରଲୋକ ଥିଲେ। ସେମାନେ ଭଦ୍ରମହିଳା ଏବଂ ଆହତ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଆସି ପହଞ୍ଚିଗଲେ। ଏ ଭିତରେ ଆଇରିନ୍ ଆଡ୍‌ଲର୍ ପାହାଚ ଦେଇ ଉପରକୁ ଉଠିଯାଇଥିଲେ। ଶେଷ

ପାହାଚ ଉପରେ ଠିଆହୋଇ ରାସ୍ତାକୁ ଚାହିଁ ସେ ପଚାରିଲେ, "ବିଚରା ଭଦ୍ରଲୋକ କ'ଣ ବେଶୀ ଆହତ ହୋଇଛନ୍ତି ?"

ଦଳେ ଲୋକ ପାଟି କରିଉଠିଲେ, "ସେ ମରିଯାଇଛନ୍ତି।"

ଆଉ ଜଣେ କହିଉଠିଲେ, "ନା, ନା, ଜୀବନ ଅଛି; କିନ୍ତୁ ତାଙ୍କୁ ଡାକ୍ତରଖାନାକୁ ନେଲାବେଳକୁ ଆଉ ଜୀବନ ନଥିବ।"

ଲୋକଙ୍କ ମେଳରେ ଜଣେ ମହିଳା ଥିଲେ। ସେ କହିଲେ, "ବିଚରା ଭଦ୍ରଲୋକ ଖୁବ୍ ସାହସୀ। ସେଇ ଗୁଣ୍ଡାଗୁଡ଼ା ଏ ଭଦ୍ରମହିଳାଙ୍କ ଘଣ୍ଟା ପଇସାପତ୍ର ସବୁ ଛଡ଼ାଇ ନେଇଥାନ୍ତେ। ଏ ବିଚରା ଯୋଗୁଁ ନେଇପାରିଲେ ନାହିଁ। ଏଇ ତ, ତାଙ୍କର ନିଃଶ୍ୱାସ ଚାଲିଛି।"

"ତାଙ୍କୁ ଏମିତି ଏ ରାସ୍ତାରେ ପକାଇ ରଖିବା ଠିକ୍ ନୁହେଁ। ଆପଣଙ୍କ ଘରଭିତରକୁ ନେଇଯିବା କି ?"

"ନିଶ୍ଚୟ, ତାଙ୍କୁ ମୋ ବୈଠକଖାନାକୁ ନେଇଆସନ୍ତୁ।"

ଖୁବ୍ ଧୀରେ ଆଉ ସାବଧାନରେ ହୋମ୍ଙ୍କୁ ବ୍ରିଅନି ଲଜ୍ ଭିତରକୁ ନିଆଗଲା। ମୁଁ ଝରକା ପାଖରେ ମୋ ଜାଗାରେ ଠିଆହୋଇ ଏସବୁ ଦେଖୁଥାଏ। ଘର ଭିତରେ ବତି ଜଳୁଥାଏ; କିନ୍ତୁ ପରଦା ଟଣାହୋଇ ନଥାଏ। ହୋମ୍ ଗୋଟେ ଖଟ ଉପରେ ପଡ଼ିଥାନ୍ତି। ମୁଁ ତାଙ୍କୁ ଦେଖିପାରୁଥାଏ। ଜାଣେନା, ଏ ଅଭିନୟ ଯୋଗୁଁ ହୋମ୍ଙ୍କ ବିବେକ କ'ଣ କହୁଥିଲା। ମୁଁ କିନ୍ତୁ ଏଇ ସୁନ୍ଦରୀ ଭଦ୍ରମହିଳାଙ୍କ ବିରୁଦ୍ଧରେ ଚକ୍ରାନ୍ତ କରୁଥିବାରୁ ମନେ ମନେ ଖୁବ୍ ଲଜ୍ଜିତ ହେଲି। ତଥାପି ଏତେବେଳେ ପଛେଇଯିବା ହୋମ୍ଙ୍କ ପ୍ରତି ଚରମ ବିଶ୍ୱାସଘାତକତା ହେବ। ମନକୁ ଦୃଢ଼କରି ମୁଁ ଧୂଆଁବାଣଟା ବାହାରକରି ହାତରେ ଧଇଲି। ଭାବିଲି, ଆମେ ତ ଭଦ୍ରମହିଳାଙ୍କର କିଛି ଅନିଷ୍ଟ କରିବାକୁ ଯାଉନାହୁଁ; ବରଂ ସେ ଅନ୍ୟର ଅନିଷ୍ଟ କରିବାକୁ ଯାଉଛନ୍ତି, ଆଉ ଆମେ ତାଙ୍କୁ ବାଧା ଦେବାକୁ ଯାଉଛୁ। ଏ ଭିତରେ ହୋମ୍ ଉଠି ଖଟ ଉପରେ ବସିଲେ। ଘରଭିତରକୁ ପବନ ଆସିବାକୁ ସେ ଠାରି ଜଣାଇଲେ। ସାଙ୍ଗେ ସାଙ୍ଗେ ଜଣେ ଚାକରାଣୀ ସାମନା ପାଖ ଝରକାଟା ଖୋଲିଦେଲା। ହୋମ୍ ମୋତେ ସଙ୍କେତ ଦେବାପାଇଁ ହାତ ଟେକିଲେ। ମୁଁ ସେ ଧୂଆଁବାଣଟା ଘର ଭିତରକୁ ଫିଙ୍ଗିଦେଇ 'ନିଆଁ ନିଆଁ' ବୋଲି ଚିତ୍କାର କରିଉଠିଲି। ମୋ ତୁଣ୍ଡରୁ କଥା ଛଡ଼େଇ ନେଇ ପାଖରେ ଥିବା ସବୁ ଲୋକ ନିଆଁ

ନିଆଁ ବୋଲି ପାଟିକରିଉଠିଲେ। ଘର ଭିତରେ ଧୂଆଁ ପୂର୍ଣ୍ଣ ହୋଇଯାଇ ଝରକାଦେଇ ବାହାରକୁ ଆସୁଥାଏ। କେତେ ଲୋକ ଏପାଖ ସେପାଖ ଦୌଡୁଥାନ୍ତି। ଭିତରୁ ହୋମ୍‌ଙ୍କ ସ୍ୱର ଶୁଣାଗଲା। ସେ କହିଲେ, ''ଏଇଟା ଧୂଆଁବାଣଟାଏ। କେହି ମିଛରେ ନିଆଁ ବୋଲି ହୁରି କରିଦେଲା।'' ସେଇ ଗୋଳମାଳ ଭିତରେ ମୁଁ ରାସ୍ତା ମୁଣ୍ଡ ବାଙ୍କପାଖକୁ ଖସି ଚାଲିଗଲି। ପ୍ରାୟ ଦଶମିନିଟ୍ ପରେ ହୋମ୍ ଆସି ମୋ ହାତ ଧରିପକାଇ ସେ ଜାଗାରୁ ମୋତେ ଟାଣି ନେଇଗଲେ। ସେ କିଛି କଥା କହୁ ନଥାନ୍ତି। ଆମେ ଏଜ୍‌ଓୟାର ରାସ୍ତା ଆଡ଼କୁ ଯାଇଥିବା ଗଳିରେ ପହଞ୍ଚିଲୁ।

ତା'ପରେ ସେ କହିଲେ, ''କାମଟା ତୁମେ ବେଶ୍ ସୁନ୍ଦର ଭାବରେ କରିଛ ଡାକ୍ତର ! ସବୁ ଠିକ୍ ଅଛି ?''

''ଫଟୋଟା ପାଇଲ ?''

''ସେଟା କେଉଁଠି ଅଛି ମୁଁ ଜାଣିପାରିଛି।''

''କେମିତି ଜାଣିଲ ?''

''କହିଥିଲି ପରା, ସୋ ମୋତେ ଦେଖାଇଦେବେ।''

''ତଥାପି ମୁଁ କିଛି ବୁଝିପାରୁନାହିଁ।''

''ଆଉ ବେଶି ବେଳ ତୁମକୁ ରହସ୍ୟ ଭିତରେ ବୁଡ଼ାଇ ରଖିବା ମୋର ଇଚ୍ଛା ନୁହେଁ। ଘଟଣାଟା ଖୁବ୍ ସହଜ। ତୁମେ ଅବଶ୍ୟ ବୁଝିପାରିଥିବ ଯେ ସେ ଗଳିରେ ଯେତେ ଲୋକ ଥିଲେ, ସମସ୍ତେ ମୋର ସାହାଯ୍ୟକାରୀ। ମୁଁ ସେମାନଙ୍କୁ କାମରେ ଲଗାଇଥିଲି।''

''ସେଟା ମୁଁ ଅନୁମାନ କରିପାରିଛି।''

''ତା' ପରେ ଯେତେବେଳେ ଲୋକଗୁଡ଼ା ଗଣ୍ଡଗୋଳ କଲେ, ମୁଁ ସେଠାକୁ ଦୌଡ଼ିଗଲି। ହାତରେ ଏକ ନାଲି ରଙ୍ଗ ଧରିଥାଏ। ସେଠାରେ ପଡ଼ିଯାଇ ହାତଟା ମୁହଁରେ ମାରିଦେଲି; ଫଳରେ ମୁଁ ଖଣ୍ଡିଆଖାବରା ହେଲାପରି ଜଣାଗଲା। ଏଟା ହେଲା ଗୋଟାଏ ଚାଲ୍।''

''ସେଟା ମଧ୍ୟ ମୁଁ ଅନୁମାନ କରିଛି।''

''ତା'ପରେ ସେମାନେ ମୋତେ ଆଡ୍‌ଲରଙ୍କ ବୈଠକଖାନାକୁ ନେଇଗଲେ। ତାଙ୍କର ମନା କରିବାର ବାଟ ନଥିଲା। ଏଇ ଘରେ ଫଟୋଟା ଥିବ ବୋଲି ମୁଁ ସନ୍ଦେହ କରୁଥିଲି। ସେମାନେ ମୋତେ ଖଟ ଉପରେ

ଶୁଆଇଦେଲେ । ମୁଁ ପବନ ପାଇଁ ଠାରିଲି, ଆଉ ବାଧ୍ୟ ହୋଇ ସେମାନେ ଝରକା ଖୋଲିଦେଲେ । ତା ସାଙ୍ଗେ ସାଙ୍ଗେ ତୁମେ ତୁମ କାମ କରିବାକୁ ସୁଯୋଗ ପାଇଗଲ ।''

''କିନ୍ତୁ ତା ଦ୍ୱାରା ତୁମର ଲାଭ ହେଲା କିପରି ?''

''ସେଇଟା ହେଲା ସବୁଠୁଁ ଗୁରୁତ୍ୱପୂର୍ଣ୍ଣ । ଯଦି ଜଣେ ସ୍ତ୍ରୀଲୋକ ଦେଖେ ଯେ ତା ଘରେ ନିଆଁ ଲାଗିଛି, ତେବେ ସେ ଆଗ ତାର ସବୁଠୁଁ ମୂଲ୍ୟବାନ୍ ଦ୍ରବ୍ୟ ପାଖକୁ ଧାଇଁଯିବ; ଜଣେ ମାଆ ତାର ଛୁଆକୁ ଧରିପକାଇବ; ଜଣେ ଅବିବାହିତା ସ୍ତ୍ରୀ ତା'ର ଗହଣା-ବାକ୍‌ସକୁ ସମ୍ଭାଳିବାକୁ ଧାଇଁବ । ଏଇଟା ମଣିଷର ପ୍ରବୃତ୍ତି । ମୁଁ ଜାଣିଥିଲି ଯେ ଆଡ୍‌ଲର୍‌ଙ୍କ ପକ୍ଷରେ ସବୁଠୁଁ ମୂଲ୍ୟବାନ୍ ପଦାର୍ଥ ସେଇ ଫଟୋଟା; ତେଣୁ ସେ ସେଇଟା ଆଣିବାକୁ ଧାଇଁଯିବେ । ନିଆଁ ନିଆଁ ହୁରିଟା ମଧ୍ୟ ଖୁବ୍ ଚମତ୍କାର ହେଲା । ସେ ଧୂଆଁ ଆଉ ପାଟିରେ ଖୁବ୍ ଟାଣୁଆ ଲୋକ ବି ଘାବରେଇଯିବ । ଆଡ୍‌ଲର୍‌ଙ୍କ ଅବସ୍ଥା ମଧ୍ୟ ସେଇଆ ହେଲା । ସେ ଚଟ୍ କରି ଫଟୋଟା ରଖିଥିବା ଜାଗାକୁ ଯାଇ ସେଟା ବାହାର କରୁଥିଲେ । ମୁଁ ଫଟୋଟା ସାମାନ୍ୟ ଦେଖିପାରିଲି । ତା'ପରେ ହୁରିଟା ମିଛ ହୁରି ବୋଲି ମୁଁ କହିଦେଲି । ସେ ଫଟୋଟା ରଖିଦେଇ ଘରୁ ବାହାରିଗଲେ । ତା ପରେ ମୁଁ ଆଉ ତାଙ୍କୁ ଦେଖିନାହିଁ । ମୁଁ ଉଠି କିଛି ଗୋଟେ ଆଳକରି ବାହାରକୁ ଚାଲିଆସିଲି । ଭାବୁଥିଲି, ଫଟୋଟା ନେଇ ଆସିବି । ଏତିକିବେଳେ ଘୋଡ଼ା ସଇସଟା ପହଞ୍ଚିଗଲା । ଦେଖିଲି, ତା ନଜରଟା ପୂରା ମୋ ଉପରେ । ଅତି ତରତର ହେଲେ ସବୁ ବିଗିଡ଼ିଯାଇପାରେ । ତେଣୁ ଅପେକ୍ଷା କରିବାକୁ ଠିକ୍ କଲି ।''

ମୁଁ ପଚାରିଲି, ''ଏଣିକି କ'ଣ ?''

''ଆମର ଅନୁସନ୍ଧାନ ଶେଷ ହୋଇଗଲା । କାଲି ସକାଳେ ଆମେ ରାଜାଙ୍କ ନିକଟକୁ ଯିବା । ତାଙ୍କୁ ସାଥିରେ ଧରି ଆଡ୍‌ଲର୍‌ଙ୍କ ସାଥିରେ ଦେଖାକରିବାକୁ ଯିବା । ତାଙ୍କ ବୈଠକଖାନାରେ ଆମେ ତାଙ୍କୁ ଅପେକ୍ଷା କରିବା । ସେ କିନ୍ତୁ ଆସିଲାବେଳକୁ ସେଠି ଆମେ ନଥିବା କିମ୍ବା ସେ ଫଟୋ ନଥିବ । ମହାରାଜା ନିଜ ହାତରେ ଫଟୋଟା ଆଣିଲେ ଖୁବ୍ ତୃପ୍ତ ହେବେ ।''

''କାଲି କେତେବେଳେ ଯିବା ?''

''ସକାଳ ଆଠଟାରେ । ଆଡ୍‌ଲର୍ ସେତେବେଳକୁ ଉଠି ନଥିବେ ।

ତେଣୁ ଆମକୁ ବେଶ୍ ସୁଯୋଗ ମିଳିବ। ତା'ଛଡ଼ା ଆମେ ଯେତେ ଶୀଘ୍ର ପାରିବା କାମଟା ହାସଲ କରିନେବା। କାରଣ ବିବାହ ପରେ ଆଡ୍‌ଲର୍‌ଙ୍କ ଜୀବନ ଏବଂ ଅଭ୍ୟାସ ହୁଏତ ବଦଳିଯାଇପାରେ। ମୁଁ ଶୀଘ୍ର ରାଜାଙ୍କ ନିକଟକୁ ଫୋନ୍ କରିଦେଉଛି।''

ଆମେ ବେକର୍ ଷ୍ଟ୍ରୀଟ୍‌ରେ ପହଞ୍ଚିଲୁ। ଦରଜା ପାଖରେ ଠିଆହୋଇ ହୋମ୍ ଚାବି ପାଇଁ ପକେଟରେ ହାତ ପୂରାଇଲେ। ଏତିକିବେଳେ ରାସ୍ତାରେ ଯାଉ ଯାଉ କେହି ଜଣେ କହିଲା, ''ଶୁଭରାତ୍ରି ମିଷ୍ଟର୍ ସେର୍‌ଲକ୍ ହୋମ୍!''

ରାସ୍ତାରେ ଅନେକ ଲୋକ ଯିବା-ଆସିବା କରୁଥିଲେ; କିନ୍ତୁ ଶୁଭରାତ୍ରି ଶବ୍ଦଟା ଢିଲା କୋଟ୍‌ପିନ୍ଧା ଜଣେ ଯୁବକ ମୁହଁରୁ ଶୁଭିଲାପରି ଜଣାଗଲା। ସେ ଖୁବ୍ ଚଞ୍ଚଳ ଚାଲିଯାଉଥାଏ।

ରାସ୍ତାର ଫିକା ଆଲୁଅକୁ ଚାହିଁ ହୋମ୍ କହିଲେ, ''ସ୍ୱରଟା ମୁଁ ଆଗରୁ ଶୁଣିଛି। ମୁଁ ବୁଝିପାରୁନାହିଁ, ଲୋକଟା କିଏ ହୋଇପାରେ।''

× × × ×

ରାତିଟା ମୁଁ ବେକର୍ ଷ୍ଟ୍ରୀଟ୍‌ରେ କଟାଇଲି। ପରଦିନ ବଡ଼ିସକାଳୁ ବୋହେମିଆର ରାଜା ଆସି ପହଞ୍ଚିଲେ। ହୋମ୍‌ଙ୍କ ଦୁଇ ହାତ ଧରିପକାଇ ସେ କହିଲେ –

''ଆପଣ ତେବେ ଫଟୋଟା ପାଇଛନ୍ତି ?''

''ଏପର୍ଯ୍ୟନ୍ତ ପାଇନାହିଁ।''

''ପାଇବାର ଆଶା ଅଛି ?''

''ନିଶ୍ଚୟ।''

''ତେବେ ଚାଲନ୍ତୁ। ମୋର ଆଉ ଧୈର୍ଯ୍ୟ ରହୁନାହିଁ।''

ସାଙ୍ଗେ ସାଙ୍ଗେ ଆମେ ରାଜାଙ୍କ ଗାଡ଼ିରେ ବ୍ରିଅନି ଲଜ୍ ଆଡ଼କୁ ବାହାରିପଡ଼ିଲୁ। ବାଟରେ ହୋମ୍ ରାଜାଙ୍କୁ କହିଲେ, ''ଆଇରିନ୍ ଆଡ୍‌ଲର୍ ବିବାହ କରିସାରିଲେଣି।''

''ବିବାହ . . . କେବେ ?''

''କାଲି।''

''କାହାକୁ ?

''ନର୍ଟନ୍ ନାଁରେ ଜଣେ ଇଂରେଜ ଓକିଲଙ୍କୁ।''

"କିନ୍ତୁ ଆଡ୍‌ଲର୍‌ଙ୍କର ତାଙ୍କ ପ୍ରତି ପ୍ରେମ ନ ଥିବ।"

"ମୋର ଆଶା, ଥିବ।"

"କାହିଁକି ?"

"କାରଣ ତା'ହେଲେ ଆପଣଙ୍କର ଭବିଷ୍ୟତରେ ଆଉ ଭୟ ନଥିବ। ଯଦି ସେ ତାଙ୍କର ସ୍ୱାମୀଙ୍କୁ ପ୍ରେମ କରନ୍ତି, ତେବେ ଆପଣଙ୍କ ପ୍ରତି ତାଙ୍କର ପ୍ରେମ ରହିବ ନାହିଁ। ତେଣୁ ଆପଣଙ୍କ କାମରେ ସେ କିଛି ବାଧା ଦେବେନାହିଁ।"

"ତା ନିଶ୍ଚୟ ସତ। ତେବେ – ସେ ଯଦି ଆମ ଗୋଷ୍ଠୀର ହୋଇଥାନ୍ତେ, ରାଣୀ ଆସନ ମଣ୍ଡିଥାନ୍ତେ।"

ଆମେ ସର୍ପେଣ୍ଟାଇନ୍ ଗଳିରେ ପହଞ୍ଚିଲୁ। ବ୍ରିଅନି ଲଜ୍‌ର ଦରଜା ଖୋଲାଥିଲା। ପାହାଚ ଉପରେ ଜଣେ ବୟସ୍କା ମହିଳା ଠିଆହୋଇଥିଲେ। ଆମେ ଗାଡ଼ିରୁ ଓହ୍ଲାଇବାମାତ୍ରେ ସେ କହିଲେ, "ମିଷ୍ଟର ସେରଲକ୍ ହୋମ୍ ବୋଧହୁଏ।"

"ହଁ, ମୁଁ ମିଷ୍ଟର ହୋମ୍। କିନ୍ତୁ କାହିଁକି ?"

"ମୋ ମାଲିକାଣୀ କହିଥିଲେ, ଆପଣ ଆସିପାରନ୍ତି। ସେ ଆଜି ସକାଳ ଟ୍ରେନ୍‌ରେ ତାଙ୍କ ସ୍ୱାମୀଙ୍କ ସହ ଚାଲିଗଲେ।"

ବିସ୍ମିତ ହୋଇ ହୋମ୍ କହିଲେ, "କଣ ହେଲା। ସେ କଣ ଇଂଲଣ୍ଡ ଛାଡ଼ି ଚାଲିଗଲେ ?"

"ହଁ, ଆଉ ଫେରିବେ ନାହିଁ।"

ବ୍ୟସ୍ତ ହୋଇ ମହାରାଜା କହିଉଠିଲେ, "ତେବେ ତ କଥା ସରିଗଲା, କାଗଜଗୁଡ଼ା ?"

"ଆମେ ଦେଖିବା", କହି ହୋମ୍ ବୈଠକଖାନାକୁ ଦୌଡ଼ିଗଲେ। ତାଙ୍କ ପଛରେ ମହାରାଜା ଆଉ ମୁଁ। ଘରର ଚଉକି ମେଜ ଆଦି ଛିତିରିବିତିରି ହୋଇ ପଡ଼ିଥିଲା। ସେଲଫ୍, ଡ୍ରୟର ସବୁ ଖୋଲା। କେହି ଯେମିତି ତରତରରେ ସେଗୁଡ଼ା ଖୋଜିପକାଇଛି। ହୋମ୍ ଧାଇଁ ଯାଇ ଗୋଟେ ଥାକରେ ହାତ ପୂରାଇ ଖଣ୍ଡେ ଫଟୋ ଆଉ ଖଣ୍ଡେ ଚିଠି ନେଇ ଆସିଲେ। ଫଟୋଟା ଆଇରିନ୍ ଆଡ୍‌ଲର୍‌ଙ୍କର। ଚିଠିଖଣ୍ଡକ ଉପରେ ଲେଖାଥିଲା, 'ମିଷ୍ଟର୍ ସେର୍‌ଲକ୍ ହୋମ୍।' ତରତର କରି ହୋମ୍ ଚିଠିଟା ଖୋଲିପକାଇଲେ। ଲେଖାଥିଲା –

''ପ୍ରିୟ ମିଷ୍ଟର୍ ହୋମ୍– ଆପଣ ବାସ୍ତବିକ ଖୁବ୍ ଚମତ୍କାର ଭାବେ ଜାମଟା କରିନେଲେ; ମୋତେ ପୂରାପୂରି ବୋକା ବନେଇଦେଲେ। ନିଅାଁ ନିଅାଁ ହୁରି ହେବାଯାଏ ମୋର ମୋଟେ ସନ୍ଦେହ ନଥିଲା। ତା'ପରେ ମୁଁ ଜାଣିଲି ଯେ ମୁଁ ଠକାମିରେ ପଡ଼ିଯାଇଛି। ଖୁବ୍ ଚିନ୍ତା କଲି। ଆପଣଙ୍କ ବିଷୟରେ ଆଗରୁ ମୋତେ ସତର୍କ କରାଇ ଦିଆଯାଇଥିଲା। କୁହାଯାଇଥିଲା, ଭାଜା ଯଦି କାହାକୁ ନିଯୁକ୍ତ କରନ୍ତି, ସେ ଆପଣ। ଆପଣଙ୍କ ଠିକଣା ମଧ ମୋତେ ଦିଆଯାଇଥିଲା। ତା ସତ୍ତ୍ୱେ ଆପଣ ଯାହା ଚାହୁଁଥିଲେ ମୋ'ଠୁ ତା ଜାଣିଗଲେ। ମୋ ମନରେ ସନ୍ଦେହ ଜାତ ହେଲା ପରେ ମଧ ମୁଁ ଜଣେ ବୁଢ଼ା ଧର୍ମଯାଜକଙ୍କର ଅନିଷ୍ଟ ଚିନ୍ତା କରିପାରିଲି ନାହିଁ। ଆପଣ ତ ଜାଣନ୍ତି, ମୁଁ ଜଣେ ଅଭିନେତ୍ରୀରୂପେ ତାଲିମ ପାଇଛି। ପୁରୁଷବେଶ ଧାରଣ କରିବା ମୋ ପକ୍ଷେ ନୂଆ ନୁହେଁ। ମୁଁ ମୋ ଘୋଡ଼ା ସଇସ ଜନ୍‌କୁ ଆପଣଙ୍କ ଉପରେ ନଜର ରଖିବାକୁ ପଠାଇଦେଇ ଉପର ମହଲାକୁ ଚାଲିଗଲି। ତା'ପରେ ମୋ ବୁଲିବା ପୋଷାକ ପିନ୍ଧି ତଳକୁ ଚାଲିଆସିଲି। ଆପଣ ଠିକ୍ ସେତିକିବେଳକୁ ଚାଲିଆସୁଥିଲେ। ମୁଁ ଆପଣଙ୍କ ପଛେ ପଛେ ଆପଣଙ୍କ ଘରଯାଏ ଆସିଲି, ଆଉ ନିଶ୍ଚିତରୂପେ ଜାଣିଲି ଯେ ସ୍ୱନାମଧନ୍ୟ ମିଷ୍ଟର୍ ସେର୍‌ଲକ୍ ହୋମ୍ ମୋ ବିଷୟରେ ଆଗ୍ରହୀ। ତା' ପରେ ମୁଁ ଆପଣଙ୍କୁ ଶୁଭରାତ୍ରି ଜଣାଇ ମୋ ସ୍ୱାମୀଙ୍କ ପାଖକୁ ଚାଲିଆସିଲି।

''ଆମେ ଦୁହେଁ ଭାବି ଠିକ୍ କଲୁ, ଏଠୁ ପଳାଇଯିବା ସବୁଠୁ ଭଲ ହେବ। କାରଣ ଆପଣଙ୍କ ପରି ଦୁର୍ଜ୍ଜୟ ପ୍ରତିଦ୍ୱନ୍ଦ୍ୱୀ ଆମ ପଛରେ ଗୋଡ଼ାଇଲେଣି। କାଲି ସକାଳେ ଆପଣ ଆସିଲେ ଦେଖିବେ ପଞ୍ଜୁରି ଖାଲି। ହଁ, ସେ ଫଟୋଟା କଥା। ଆପଣଙ୍କ ମହକିଲଙ୍କୁ କହିବେ ସେ ନିଶ୍ଚିନ୍ତ ରହିବେ। ମୁଁ ତାଙ୍କଠୁ ଆହୁରି ଭଲ ଲୋକଙ୍କର ସ୍ନେହ ପାଇଛି। ରାଜା ତାଙ୍କର ଯାହା ଇଚ୍ଛା କରିପାରନ୍ତି। ଯାହା ପ୍ରତି ସେ ଘୋର ଅନ୍ୟାୟ କରିଛନ୍ତି, ତା'ଠାରୁ କୌଣସି ବାଧା ପାଇବେ ନାହିଁ। ଭବିଷ୍ୟତରେ ସେ ହୁଏତ ମୋ ବିରୁଦ୍ଧରେ କିଛି କରିପାରନ୍ତି; ତେଣୁ ନିଜର ରକ୍ଷାପାଇଁ ମୁଁ ଫଟୋଟା ରଖିଲି। ମୋର ଗୋଟେ ଫଟୋ ଛାଡ଼ିଯାଉଛି। ସେ ହୁଏତ ସେଟା ରଖିବାକୁ ଇଚ୍ଛା କରିପାରନ୍ତି। ରହିଲି।

ଆଇରିନ୍ ନର୍ଟନ୍ ଓରଫ ଆଡ୍‌ଲର୍''

ଆମେ ତିନିଜଣ ଚିଠିଟା ପଢ଼ିଲୁ। ରାଜା କହିଉଠିଲେ, ''କି ଅଦ୍‌ଭୁତ ନାରୀ ! ରାଣୀ ହେବାର ଯୋଗ୍ୟା। ଦୁଃଖର କଥା, ସେ ମୋ ସ୍ତରର ନୁହନ୍ତି।''

ଉଦାସ ଭାବରେ ହୋମ୍ କହିଲେ, ''ମୁଁ ଯାହା ଦେଖିଲି, ସେ ପ୍ରକୃତରେ ଆପଣଙ୍କଠାରୁ ସଂପୂର୍ଣ୍ଣ ଭିନ୍ନ ସ୍ତରର। ବଡ଼ ଦୁଃଖର କଥା, ଆପଣଙ୍କ କାମର ଆଉ କିଛି ଭଲ ଫଳ ମୋଦ୍ୱାରା ହୋଇପାରିଲା ନାହିଁ।''

''ବରଂ ୟାଠୁ ଆଉ କିଛି ଭଲ ଫଳ ହୋଇନଥାନ୍ତା। ମୁଁ ତାଙ୍କ କଥାର ମୂଲ୍ୟ ଜାଣେ। ଫଟୋଟା ପୋଡ଼ିଯାଇଥିଲେ ଯେତେ ନିରାପଦ, ଏବେ ବି ସେତିକି ନିରାପଦ।''

''ଆପଣଙ୍କଠାରୁ ଯା ଶୁଣି ମୁଁ ଖୁସି ହେଲି।''

''ଆପଣଙ୍କ ପାଖରେ ମୁଁ କୃତଜ୍ଞ। ଆପଣଙ୍କୁ କ'ଣ ପୁରସ୍କାର ଦେବି ? ଏଇ ମୁଦିଟି ନିଅନ୍ତୁ।''

''ଆପଣଙ୍କ ପାଖରେ ଆଉ ଏକ ପଦାର୍ଥ ଅଛି। ତାକୁ ମୁଁ ଅଧିକ ମୂଲ୍ୟବାନ୍ ମନେକରେ।''

''କେଉଁ ଜିନିଷ ?''

''ଏଇ ଫଟୋଟି।''

ବିସ୍ମିତ ହୋଇ ରାଜା କହିଲେ, ''ଆଇରିନ୍‌ଙ୍କ ଫଟୋ ? ନିଶ୍ଚୟ, ଯଦି ଚାହାନ୍ତି, ତେବେ ନିଅନ୍ତୁ।''

''ଆପଣଙ୍କୁ ଅଶେଷ ଧନ୍ୟବାଦ। ଆଉ ତେବେ ଏ ବିଷୟରେ କିଛି କରିବାର ନାହିଁ। ବିଦାୟ।'' ଏତିକି କହି ହୋମ୍ ମୁହଁ ବୁଲାଇ ଚାଲିଆସିଲେ। ତା' ପରେ ଆମେ ତାଙ୍କ କୋଠରିକୁ ଫେରିଲୁ।

ଏଇପରି ଭାବରେ ବୋହେମିଆର ଅପବାଦ ଏବଂ ହୋମ୍‌ଙ୍କ ସୁଚିନ୍ତିତ ଯୋଜନା ଜଣେ ନାରୀର ବୁଦ୍ଧି ନିକଟରେ ପରାସ୍ତ ହେଲା। ପୂର୍ବରୁ ହୋମ୍ ନାରୀମାନଙ୍କ ଚତୁରତାକୁ ରହସ୍ୟ କରୁଥିଲେ। ଏବେ ଆଉ ସେପରି କରିବା ମୁଁ ଶୁଣିନାହିଁ। ଆଇରିନ୍ ଆଡ୍‌ଲର୍ କିମ୍ବା ତାଙ୍କ ଫଟୋ କଥା ପଡ଼ିଲେ ସେ ତାଙ୍କୁ ସବୁବେଳେ ନାରୀ ବୋଲି କହିଥାନ୍ତି।

□ □ □

# ହଜିଲା ଲୋକର ରହସ୍ୟ

ବେକର୍ ଷ୍ଟ୍ରୀଟ୍‌ରେ ହୋମ୍‌ଙ୍କ କୋଠରିର ନିଆଁକୁଣ୍ଡ ପାଖରେ ଆମେ ବସିଥାଉ। ହୋମ୍ କହିଲେ, ''ବୁଝିଲ ୱାଟ୍‌ସନ୍, ମଣିଷ ମୁଣ୍ଡ ଯାହା କିଛି ଉଦ୍‌ଭାବନ କରିପାରେ, ତା'ଠାରୁ ମଣିଷ ଜୀବନ ଆହୁରି ଅଧିକ ବିଚିତ୍ର। ଯାହା ସବୁ ପ୍ରକୃତରେ ଅତି ସାଧାରଣ କଥା, ତାହା ଆମେ କଳ୍ପନା କରିପାରୁନାହିଁ।'' ଏତିକି କହି ସେ ମୋ ଆଡ଼କୁ ସୁନ୍ଦର ନାସଡବାଟିଏ ବଢ଼ାଇଦେଲେ। ଖାଣ୍ଟି ସୁନାର ଡବାଟିଏ। ଢାଙ୍କୁଣୀ ମଝିରେ ନାଲି ରଙ୍ଗର ଦାମିକା ପଥର। ହୋମ୍‌ଙ୍କ ସାଧାରଣ ଚଳଣି ସାଥିରେ ଏ ଦାମିକା ଡବାଟା ମୋଟେ ଖାପ୍ ଖାଉ ନ ଥିଲା। ମୁଁ ତା ଉପରେ ପଦେଅଧେ ଟିପ୍‌ପଣୀ ନ ଦେଇ ରହିପାରିଲି ନାହିଁ।

ସେ କହିଲେ, ''ତୁମ ସାଥିରେ ମୋର କେତେ ଦିନ ହେଲା ଦେଖାହୋଇନାହିଁ ବୋଲି ମୁଁ ଭୁଲିଯାଇଥିଲି। ଏ ଡବାଟି ବୋହେମିଆ ରାଜା ଉପହାର ଦେଇଛନ୍ତି।''

''ଆଉ ଏ ମୁଦିଟା ?'' ତାଙ୍କ ଆଙ୍ଗୁଠିରେ ଥିବା ଦାମିକା ପଥରବସା ମୁଦିଟାକୁ ଚାହିଁ ମୁଁ ପଚାରିଲି।

''ଏଇଟା ହଲାଣ୍ଡର ରାଜାଙ୍କଠାରୁ ମିଳିଛି। ଯେଉଁ ଘଟଣାରେ ମୁଁ ତାଙ୍କୁ ସାହାଯ୍ୟ କରିଥିଲି, ସେଟା ନିହାତି ଗୁପ୍ତ ଆଉ ଘରୋଇ। ତେଣୁ ସେଟା ମୁଁ ତୁମ ଆଗରେ ମଧ୍ୟ କହିପାରୁନାହିଁ।''

''ଏବେ କଣ ହାତରେ କିଛି କେଶ୍ ଅଛି ନା ନାହିଁ?''

''ହଁ, ଦଶ ବାରଟା ଅଛି; କିନ୍ତୁ କୌଣସିଟା ସେତେ କୌତୂହଳପ୍ରଦ ନୁହେଁ; ସେଗୁଡ଼ା ଅବଶ୍ୟ ବେଶ୍ ଗୁରୁତର। ମୁଁ ଦେଖୁଛି ଯେଉଁ ଘଟଣାଗୁଡ଼ାକର ଗୁରୁତ୍ୱ ନାହିଁ, ସେଇ ଘଟଣାରେହିଁ ପର୍ଯ୍ୟବେକ୍ଷଣ କରିବା ଓ ଅନୁଶୀଳନ କରି କାର୍ଯ୍ୟ-କାରଣ ନିର୍ଣ୍ଣୟ କରିବାର ସୁବିଧା ଅଛି, ଅନୁସନ୍ଧାନ କରିବାରେ ଆନନ୍ଦ ଅଛି। ବଡ଼ ବଡ଼ ଅପରାଧ ଅନୁସନ୍ଧାନ କରିବା ସହଜ। କାରଣ ଏ କ୍ଷେତ୍ରରେ ଅପରାଧୀର ଉଦ୍ଦେଶ୍ୟ ସହଜରେ ଜଣାଯାଇଥାଏ। ଯାହାହେଉ

କେତେକ ମିନିଟ୍ ଭିତରେ ମୁଁ କିଛି ଭଲ କେଶ୍ ପାଇବି। କାରଣ ଏ ଯେ ମୋର ଜଣେ ମହକିଲ, ଏଥିରେ ସନ୍ଦେହ ନାହିଁ।''

ସେତେବେଳକୁ ସେ ଚଉକିରୁ ଉଠି ଝରକା ପାଖରେ ଠିଆହୋଇ ରାସ୍ତା ଆଡ଼କୁ ଚାହିଁଥାନ୍ତି। ମୁଁ ଉଠିଯାଇ ତାଙ୍କ କାନ୍ଧ ଉପର ଦେଇ ରାସ୍ତାକୁ ଚାହିଁଲି। ରାସ୍ତା ଆରପାଖରେ ଜଣେ ହୃଷ୍ଟପୁଷ୍ଟ ମହିଳା। ବେକ ଚାରିପାଖେ ମଫଲର। ମୁଣ୍ଡରେ ପକ୍ଷିଖଞ୍ଜା ଏକ ଟୋପି। ଟୋପିର ଧାର ବେଶ୍ ଚଉଡ଼ା। ଏଇ ଟୋପି ତଳୁ ସେ ବ୍ୟସ୍ତହୋଇ ଆମ କୋଠରି ଝରକା ଆଡ଼କୁ ଚାହିଁଥିଲେ। ଦେହଟା ଅସ୍ଥିର ଭାବରେ ଆଗପଛ ହେଉଥାଏ। ହଠାତ୍ ସେ ଖୁବ୍ ଜୋର୍‌ରେ ରାସ୍ତା ଏପାଖକୁ ଦୌଡ଼ିଆସିଲେ, ଆଉ ଆମ କୋଠରିର କଲିଂ ବେଲ୍ ବାଜିଉଠିଲା।

ଦରପୋଡ଼ା ସିଗାରେଟ୍‌ଟା ନିଆଁକୁଣ୍ଡକୁ ଫିଙ୍ଗିଦେଇ ହୋମ୍ କହିଲେ, ''ଏ ପ୍ରକାର ଲକ୍ଷଣ ମୁଁ ଆଗରୁ ଜାଣେ। ଏ ପ୍ରକାର ଅସ୍ଥିରତାର ଅର୍ଥ ଘଟଣାଟା ଗୁରୁ; କିନ୍ତୁ ଲାଜର କଥା। ସେ ଉପଦେଶ ଚାହାନ୍ତି; କିନ୍ତୁ କଥାଟା ଜଣାଇବାକୁ ତାଙ୍କୁ ଲାଜ ଲାଗିବ କି ନା, ଠିକ୍ କରିପାରୁନାହାନ୍ତି। ଏଠି ଆମକୁ ବିଚାର କରିବାକୁ ହେବ। ଯେତେବେଳେ କୌଣସି ସ୍ତ୍ରୀଲୋକ କୌଣସି ପୁରୁଷଦ୍ୱାରା ଗୁରୁତର ଭାବେ ନିର୍ଯାତିତ ହୁଏ, ସେତେବେଳେ ସେ ଆଉ ଅସ୍ଥିର ହୁଏନା। ତେଣୁ ଏଠି ଆମକୁ ଧରିନେବାକୁ ହେବ ଯେ ଘଟଣାଟା ପ୍ରେମଜନିତ। ଭଦ୍ରମହିଳା ଯେତେ ବିବ୍ରତ ଆଉ ଦୁଃଖିତ, ସେତେ ରାଗିଲା ପରି ଜଣାଯାଉନାହାନ୍ତି। ଯାହାହେଉ ଆମର ସନ୍ଦେହ ଦୂରକରିବାକୁ ଏଇ ସେ ନିଜେ ଆସୁଛନ୍ତି।''

ତାଙ୍କ ତୁଣ୍ଡରୁ କଥା ସରୁ ନ ସରୁଣୁ ଦରଜାରେ ଠକ୍ ଠକ୍ ଶବ୍ଦ ହେଲା। ଚାକର ଟୋକା ଆସି କହିଲା, ''କୁମାରୀ ମେରୀ ସଦର୍‌ଲାଣ୍ଡ।'' ତା ପଛେ ପଛେ ଭଦ୍ରମହିଳା ଘର ଭିତରକୁ ପଶିଆସିଲେ। ଦରଜାଟା ବନ୍ଦ କରିଦେଇ ହୋମ୍ ତାଙ୍କୁ ବସିବାକୁ ଇଙ୍ଗିତ ଦେଲେ। ତା'ପରେ ଗୋଟାଏ ମିନିଟ୍‌ରେ ଭଦ୍ରମହିଳାଙ୍କୁ ପାଦଠୁଁ ମୁଣ୍ଡଯାଏ ଦେଖିନେଇ କହିଲେ, ''ଆପଣଙ୍କ ଆଖି ଖରାପ; ତେଣୁ ଏତେ ବେଶି ଟାଇପ୍ କରିବା ନିଶ୍ଚୟ କଷ୍ଟକର ହେଉଥିବ।''

''ପ୍ରଥମେ ପ୍ରଥମେ କଷ୍ଟକର ହେଉଥିଲା; ଏବେ କିନ୍ତୁ ମେସିନ୍‌କୁ

ନ ଚାହିଁ ମୁଁ ଅକ୍ଷର ସବୁ ଜାଣିଗଲିଣି।'' ତା'ପରେ ହଠାତ୍ ସେ ଚମକି ଉଠିଲେ। ମୁହଁରେ ଭୟ ଆଉ ବିସ୍ମୟର ଚିହ୍ନ। ଅବାକ୍ ହୋଇ କହିଲେ, ''ଆପଣ ତା'ହେଲେ ମୋ କଥା ଶୁଣିଛନ୍ତି ମିଷ୍ଟର୍ ହୋମ୍, ନୋହିଲେ ଆପଣ ଏ ସବୁ ଜାଣିଥାନ୍ତେ କେମିତି ?''

ହସି ହସି ହୋମ୍ କହିଲେ, ''କିଛି ଚିନ୍ତା କରନ୍ତୁ ନାହିଁ। ସବୁ କଥା ଜାଣିବା ହେଲା ମୋର କାମ। ଅନ୍ୟମାନେ ଯାହା ଦେଖି ନ ପାରନ୍ତି, ତାହା ଦେଖିବା ମୋର ଅଭ୍ୟାସ। ତା'ନହେଲେ ଆପଣ ପରାମର୍ଶ ପାଇଁ ମୋ ପାଖକୁ ଆସିଥାନ୍ତେ କାହିଁକି ?''

ଶ୍ରୀମତୀ ଇଥେରେଜ୍‌ଙ୍କଠୁଁ ଆପଣଙ୍କ ନାଁ ଶୁଣି ଏଠିକି ଆସିଲି। ତାଙ୍କ ସ୍ୱାମୀ ମରିଯାଇଛନ୍ତି ବୋଲି ପୋଲିସ ଆଉ ଅନ୍ୟମାନେ ନିଶ୍ଚିତଭାବେ ଧରିନେଇଥିଲେ ଅଥଚ ଆପଣ ଅତି ସହଜରେ ତାଙ୍କୁ ଖୋଜି ବାହାର କରିଥିଲେ। ମୋ ପାଇଁ ଆପଣ ସେତିକି କରନ୍ତୁ। ମୁଁ ଅବଶ୍ୟ ଧନୀ ନୁହେଁ; ତଥାପି ମୋ ନିଜ ସମ୍ପତ୍ତିରୁ ମୁଁ ବର୍ଷକୁ ଶହେ ପାଉଣ୍ଡ ପାଏ। ତା'ଛଡ଼ା ଟାଇପ୍ କରି ବି କିଛି ରୋଜଗାର କରେ। ମୁଁ ସେସବୁ ଆପଣଙ୍କୁ ଦେବି। କେବଳ ହୋମର୍ ଆଂଜେଲ୍‌ଙ୍କର କଣ ହେଲା, ମୁଁ ଜାଣିବାକୁ ଚାହେଁ।''

''ଆପଣ ଏତେ ବ୍ୟଗ୍ର ହୋଇ ଘରୁ ବାହାରିଆସିଲେ କାହିଁକି ?''

କୁମାରୀ ସଦର୍‌ଲାଣ୍ଡ ପୁଣି ଆଶ୍ଚର୍ଯ୍ୟ ହୋଇ କହିଲେ, ''ହଁ, ହଠାତ୍ ଘରୁ ବାହାରିଆସିଲି; କାରଣ ମୋ ବାପା ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍ କଥାଟାକୁ ଅତି ହାଲୁକା ଭାବରେ ଉଡ଼େଇଦେଲେ। ମୋତେ ରାଗ ଲାଗିଲା। ମିଷ୍ଟର୍ ଆଞ୍ଜେଲ୍‌ଙ୍କ ନିରୁଦ୍ଦେଶ୍ୟ କଥା ସେ ପୋଲିସକୁ ଜଣାଇଲେ ନାହିଁ, କିମ୍ୱା ଆପଣଙ୍କ ନିକଟକୁ ଆସିଲେ ନାହିଁ। କିଛି ନ କରି ସେ ଖାଲି କହିଲେ ଯେ କିଛି ଅନିଷ୍ଟ ଘଟିନାହିଁ। ମୁଁ ପାଗଳ ପରି ଆପଣଙ୍କ ପାଖକୁ ସିଧା ଚାଲିଆସିଛି।''

''ଆପଣଙ୍କ ବାପା ? ନାଁଟାରୁ ଜଣାଯାଉଛି ନିଶ୍ଚୟ ଆପଣଙ୍କ ସାବତବାପା।''

''ହଁ, ସାବତବାପା। ସେ ମୋ'ଠୁଁ ମୋଟେ ପାଞ୍ଚବର୍ଷ ଦୁଇମାସ ବଡ଼ ହେଲେ ବି ମୁଁ ତାଙ୍କୁ ବାପା ବୋଲି ଡାକେ।''

''ଆପଣଙ୍କ ମା' ବଞ୍ଚିଛନ୍ତି ?''

''ହଁ, ବେଶ୍ ଭଲ ଅଛନ୍ତି। ବାପା ମରିଯିବା ପରେ ପରେ ସେ ପୁଣି ବିବାହ କଲେ, ପୁଣି ଯାହାଙ୍କୁ ବିବାହ କଲେ ସେ ତାଙ୍କଠୁଁ ପନ୍ଦରବର୍ଷ ସାନ। ଏଥିରେ ମୁଁ ମୋଟେ ସନ୍ତୁଷ୍ଟ ହେଲିନାହିଁ। ଟଟେନହାମ୍ କୋର୍ଟ ରୋଡ଼ରେ ବାପାଙ୍କର ଗ୍ୟାସ୍ ନଳ ବ୍ୟବସାୟ ଥିଲା। ସେ ମରିଯିବା ପରେ ମା' ଫୋରମ୍ୟାନ୍ ମିଷ୍ଟର୍ ହାର୍ଡିଙ୍କ ସାଥିରେ ମିଶି ବ୍ୟବସାୟ ଚଳେଇଲେ; କିନ୍ତୁ ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍ ଆସିବା ପରେ ବ୍ୟବସାୟ ବିକିଦେଲେ। ସେଥିରୁ ସେ ଚାରିହଜାର ସାତଶହ ପାଉଣ୍ଡ ପାଇଲେ। ବାପା ବଞ୍ଚିଥିଲେ ହୁଏତ ଏତେ ପଇସା ମିଳି ନଥାନ୍ତା। ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍‌ଙ୍କର ମଦ ବ୍ୟବସାୟ ଥିଲା।

ଏଇସବୁ ଅପ୍ରାସଙ୍ଗିକ ଟିକିନିଖି କଥା ଶୁଣି ହୋମ୍ ଅଧୈର୍ଯ୍ୟ ଆଉ ବ୍ୟସ୍ତ ହୋଇଯିବେ ବୋଲି ମୁଁ ଭାବୁଥାଏ; କିନ୍ତୁ ଦେଖିଲି ସେ ଧୀରଭାବରେ ମନଦେଇ ସବୁକଥା ଶୁଣୁଛନ୍ତି।

ତା'ପରେ ସେ ପଚାରିଲେ, ''ଆପଣଙ୍କର ଯାହା କିଛି ଆୟ, ତା କଣ ଏଇ ବ୍ୟବସାୟରୁ ମିଳେ ?''

''ନା, ସେ ହେଲା ପୂରା ଅଲଗା। ଅକ୍‌ଲାଣ୍ଡରେ ମୋ ମାମୁ ନେଡ୍‌ଙ୍କର ଦୁଇହଜାର ପାଞ୍ଚଶହ ପାଉଣ୍ଡର ବ୍ୟବସାୟ। ସେ ମତେ ସେ ବ୍ୟବସାୟ ଦେଇଥିଲେ। ମୁଁ ତାର ସୁଧତକ ମାତ୍ର ପାଇବି। ସୁଧ ଶତକଡ଼ା ସାଢ଼େ ଚାରିଭାଗ।''

''ଆପଣଙ୍କ ଆୟ ଯଥେଷ୍ଟ ବେଶି। ବର୍ଷକୁ ପ୍ରାୟ ଶହେ ପାଉଣ୍ଡ। ସେଥିରେ ଆପଣ ତ ବେଶ୍ ଆରାମରେ ଚଳିପାରିବେ। ମୁଁ ଜାଣେ, ଷାଠିଏ ପାଉଣ୍ଡରେ ଜଣେ ସ୍ତ୍ରୀ ଲୋକ ବେଶ୍ ଖୁସିରେ ଚଳିପାରିବ। ତେବେ ଆପଣ ଟାଇପ୍ କରନ୍ତି କାହିଁକି ?''

''ସେଥିରୁ କମ୍ ପଇସାରେ ବି ମୁଁ ଚଳିପାରିବି; କିନ୍ତୁ ଯେତେଦିନଯାଏ ମୁଁ ଘରେ ଅଛି, ସେମାନଙ୍କ ଉପରେ ବୋଝ ହେବାକୁ ଚାହେଁନା। ତେଣୁ ମୋ ପଇସାଟା ସେମାନେ ଘରେ ଖର୍ଚ୍ଚ କରନ୍ତି; ସେଇଟା ଅବଶ୍ୟ ବର୍ତ୍ତମାନ ପାଇଁ। ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍ ପ୍ରତି ତିନି ମାସରେ ଥରେ ମୋ ଟଙ୍କାଟା ଆଣି ମା'ଙ୍କ ଜିମା ଦିଅନ୍ତି। ମୁଁ ଟାଇପ୍ କରି ଯାହା ପାଏ, ସେଥିରେ

ସୁନ୍ଦର ଚଳିଯାଏ। ଖଣ୍ଡିଏ କାଗଜ ଟାଇପ୍ କଲେ ମୁଁ ଦୁଇ ପେନ୍ସ୍ ପାଏ। ଦିନକୁ ମୁଁ ପନ୍ଦର କୋଡ଼ିଏ ଖଣ୍ଡ ଟାଇପ୍ କରିପାରେ।''

''ଆପଣ ବେଶ୍ ଭଲଭାବରେ ସବୁ କହିଛନ୍ତି। ଇଏ ମୋର ବନ୍ଧୁ ଡାକ୍ତର ଉଆଟ୍‌ସନ୍। ଆପଣ ତାଙ୍କ ପାଖରେ ସବୁ କଥା ଖୋଲାଖୋଲି କହିପାରନ୍ତି। ଏଥର ହୋମର୍ ଆଞ୍ଜେଲ୍‌ଙ୍କ ସାଥିରେ ଆପଣଙ୍କ ସମ୍ଭନ୍ଧ କଥା କହନ୍ତୁ।''

କୁମାରୀ ସଦର୍‌ଲାଣ୍ଡଙ୍କ ମୁହଁ ସାମାନ୍ୟ ଲାଲ ପଡ଼ିଗଲା। ସେ କହିଲେ, ''ତାଙ୍କ ସହିତ ମୋର ପ୍ରଥମ ଦେଖା ଗ୍ୟାସ୍ ଫିଟର୍‌ମାନଙ୍କ ବଲ୍ ନାଚଶାଳାରେ। ବାପା ବଞ୍ଚିଥିଲାବେଳେ ସେଠୁ ଆମ ପାଖକୁ ବରାବର ଟିକେଟ୍ ଆସେ। ସେ ମରିଗଲାପରେ ସେମାନେ ମା'ଙ୍କ ପାଖକୁ ଟିକେଟ୍ ପଠାନ୍ତି। ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍ କିନ୍ତୁ ଆମର ସେଠିକି ଯିବା ଚାହାନ୍ତି ନାହିଁ। ଆମେ କେବେ କୁଆଡ଼େ ବାହାରକୁ ଯିବା ସେ ପସନ୍ଦ କରନ୍ତି ନାହିଁ। ରବିବାରିଆ ସ୍କୁଲ ପିଲାଙ୍କ ଦଳରେ ମୁଁ ବାହାରିଲେ ମଧ୍ୟ ସେ ଭୀଷଣ ବିରକ୍ତ ହୁଅନ୍ତି। ଏଥର କିନ୍ତୁ ମୁଁ ଯିବା ପାଇଁ ଜିଦ୍ କଲି। ମୋତେ ମନାକରିବା ପାଇଁ ତାଙ୍କର କି ଅଧିକାର ଅଛି? ସେ ଏଣୁତେଣୁ ଆଳ ଦେଖାଇ କହିଲେ, ସେ ଲୋକଗୁଡ଼ାକ ଆମର ସମାସ୍କନ୍ଦ ନୁହନ୍ତି; ଅଥଚ ସେମାନେ ସବୁ ବାପାଙ୍କର ସାଙ୍ଗସାଥୀ। ପୁଣି କହିଲେ, ମୋର ଭଲ ପୋଷାକ ନାହିଁ; ଅଥଚ ମୋର ଲାଲ ରଙ୍ଗର ପୋଷାକଟା ସେମିତି ନୂଆପଣେ ଥାଏ। ଶେଷରେ ମୋତେ ମନାକରିବାକୁ ଆଉ କିଛି ଆଳ ନ ପାଇ ସେ ବ୍ୟବସାୟ ସଂକ୍ରାନ୍ତରେ ଫ୍ରାନ୍‌ସ ଚାଲିଗଲେ। ମାଆ ଆଉ ମୁଁ ମିଷ୍ଟର୍ ହାର୍ଡ଼ିଙ୍କ ସାଥିରେ ବଲ୍ ନାଚକୁ ଗଲୁ। ସେଇଠି ହୋମର୍ ଆଞ୍ଜେଲଙ୍କ ସାଥିରେ ମୋର ପହିଲି ଦେଖାସାକ୍ଷାତ୍।''

''ଫ୍ରାନ୍‌ସରୁ ଫେରିଲାପରେ ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍ ନିଶ୍ଚୟ ଆପଣଙ୍କ ଉପରେ ଖୁବ୍ ବିରକ୍ତ ହୋଇଥିବେ।''

''ନା; ବରଂ ସେ ହସି ହସି କହିଲେ, ଜଣେ ନାରୀକୁ କୌଣସି ବିଷୟରେ ମନାକରିବାରେ କିଛି ଲାଭ ନାହିଁ; କାରଣ ସେ ତା ବାଟ ଧରିବ।''

"ଆଚ୍ଛା ! ତା'ହେଲେ ଏଇ ଗ୍ୟାସ୍ ଫିଟରମାନଙ୍କ ନାଚଶାଳାରେ ଆପଣ ଜଣେ ଭଦ୍ରଲୋକଙ୍କୁ ଭେଟିଲେ, ଆଉ ତାଙ୍କ ନାଁ ମିଷ୍ଟର୍ ହୋମ୍ର ଆଞ୍ଜେଲ୍ ?"

"ହଁ ଆଜ୍ଞା, ସେଇ ରାତିରେ ତାଙ୍କ ସାଥିରେ ମୋର ଦେଖା। ତା ପରଦିନ ସେ ଆମ ଘରକୁ ଆସିଥିଲେ। ଆମେ ସୁବିଧାରେ ଫେରିଲୁ କି ନା, ପଚାରି ବୁଝିଲେ। ତା'ପରେ ତାଙ୍କ ସାଥିରେ ମୋର ଦୁଇଥର ଦେଖାହୋଇଛି। ଆମେ ସାଥିହୋଇ ବୁଲିଯାଇଛୁ; କିନ୍ତୁ ବାପା ଫ୍ରାନ୍ସରୁ ଫେରିଲେ, ଆଉ ହୋମର୍ ଆଞ୍ଜେଲ୍ ଆମ ଘରକୁ ଆସିପାରିଲେ ନାହିଁ।"

"ଆସିପାରିଲେ ନାହିଁ ?"

"ନା, ଆପଣ ତ ଜାଣନ୍ତି ବାପା ଏସବୁ ଭଲପାଆନ୍ତି ନାହିଁ। ଆମ ଘରକୁ କେହି ଭଦ୍ରଲୋକ ଆସିବା ସେ ଚାହାନ୍ତି ନାହିଁ। ସେ କହନ୍ତି, ଜଣେ ନାରୀ ତା ନିଜ ଘର ଭିତରେ ଖୁସିରେ ରହିପାରେ। ମୁଁ କିନ୍ତୁ ମାଆଙ୍କୁ କହେ, ନାରୀ ତା ନିଜର ପରିବେଶ ଚାହେଁ; ଅଥଚ ମୁଁ ସେ ସୁବିଧା ପାଇନାହିଁ।"

"କିନ୍ତୁ ମିଷ୍ଟର୍ ହୋମର୍ ଆଞ୍ଜେଲ, ସେ ଆପଣଙ୍କ ସଙ୍ଗେ ଦେଖାକରିବାକୁ ଚେଷ୍ଟା କରିଥିଲେ ?"

"ସପ୍ତାହକ ପରେ ବାପାଙ୍କର ପୁଣି ଫ୍ରାନ୍ସ୍ ଯିବା କଥା ଥିଲା। ତେଣୁ ହୋମର୍ ଚିଠି ଲେଖିଲେ ଯେ ସେପର୍ଯ୍ୟନ୍ତ ଆମର ଦେଖାସାକ୍ଷାତ ନ ହେବାଟା ବରଂ ଭଲ। ଏ ଭିତରେ ଆମେ ଚିଠି ଦିଆନିଆ କରୁ। ସେ ପ୍ରତିଦିନ ଚିଠି ଦିଅନ୍ତି। ମୁଁ ବଡ଼ିସକାଳୁ ଚିଠିଗୁଡ଼ାକ ନେଇଯାଏ। ତେଣୁ ବାପା କିଛି ଜାଣିପାରନ୍ତି ନାହିଁ।"

"ଆଚ୍ଛା, ଭଦ୍ରଲୋକଙ୍କ ସାଥିରେ ଆପଣଙ୍କ ବିବାହର କିଛି ପ୍ରତିଶ୍ରୁତି ଦିଆନିଆ ହୋଇଥିଲା ?"

"ହଁ, ଆମେ ବିବାହ ପାଇଁ ସ୍ଥିର କରିସାରିଥିଲୁ। ମିଷ୍ଟର୍ ଆଞ୍ଜେଲ ଲିଡ଼େନ୍ହଲ୍ ଷ୍ଟ୍ରୀଟ୍‌ରେ ଏକ ଅଫିସରେ କ୍ୟାସିୟର୍।"

"କେଉଁ ଅଫିସ ?"

"ସେଇ ହେଲା ସବୁଠୁ ଅଡୁଆ; କୋଉ ଅଫିସ ମୁଁ ଜାଣେନା।"

"ସେ ତେବେ ରହୁଥିଲେ କେଉଁଠି ?"

''ସେଇ ଅଫିସରେ ସେ ରହୁଥିଲେ।''

''ଆପଣ ତାଙ୍କ ଠିକଣା ଜାଣନ୍ତି ନାହିଁ?''

''ନା, କେବଳ ଲିଡ଼େନ୍‌ହଲ୍ ଷ୍ଟ୍ରୀଟ୍ ଛଡ଼ା ଆଉ କିଛି ଜାଣେନା।''

''ଆପଣ ତେବେ କେଉଁ ଠିକଣାରେ ଚିଠି ଦେଉଥିଲେ?''

''ଲିଡ଼େନ୍‌ହଲ ପୋଷ୍ଟ ଅଫିସ। ସେ କହିଥିଲେ ସେ ଅଫିସ ଠିକଣାରେ ଚିଠି ଦେଲେ, ତାଙ୍କ ସାଥୀ କିରାଣିମାନେ ସେ ଚିଠି ଦେଖିବେ। ଜଣେ ନାରୀର ଚିଠି ବୋଲି ତାଙ୍କୁ ଥଟ୍ଟା ତମାସା କରିବେ। ସେଥିପାଇଁ ମୁଁ ଚିଠିସବୁ ଟାଇପ୍ କରି ପଠାଉଥିଲି। ସେ ମଧ୍ୟ ସେମିତି ଟାଇପ୍ କରି ଦେଉଥିଲେ। ସେ କିନ୍ତୁ କହୁଥିଲେ, ମୋ ହାତଲେଖା ଚିଠି ପାଇଲେ, ତାଙ୍କୁ ଲାଗୁଥିଲା, ଚିଠିଟା ଯେମିତି ମୋ ପାଖରୁ ଯାଇଛି। ଚିଠିଟା ଟାଇପ୍‌କରା ହୋଇଥିଲେ ତାଙ୍କୁ ଜଣାଯାଉଥିଲା ଆମ ଭିତରେ ଟାଇପ୍ ମେସିନ୍‌ଟା ଯେମିତି ଗୋଟେ ଅନ୍ତରାୟ। ଏଇଥିରୁ ଜାଣିପାରୁଥିବେ ମିଷ୍ଟର୍ ହୋମ୍‌ସ୍, ସେ ମୋତେ କେତେ ଭଲପାଉଥିଲେ, ଆଉ କେତେ ଛୋଟ ବିଷୟ ମଧ୍ୟ ସେ ଭାବୁଥିଲେ।''

''ମୋ ମତରେ ଏଇ ଛୋଟ ଛୋଟ ବିଷୟଗୁଡ଼ାକ କିନ୍ତୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ। ମିଷ୍ଟର୍ ହୋମର୍ ଆଞ୍ଜେଲଙ୍କ ସମ୍ବନ୍ଧରେ ଏଇମିତି ଆଉ କିଛି ଛୋଟ ଛୋଟ କଥା ଆପଣଙ୍କର ମନେଅଛି?''

''ସେ ବଡ଼ ଲାଜକୁଳା। ମୋ ସାଥିରେ ଦିନବେଳା ବୁଲିବାକୁ ଯିବାଠୁ ସଂଧ୍ୟାରେ ଯିବାକୁ ସେ ପସନ୍ଦ କରନ୍ତି। ଖୁବ୍ ନମ୍ର ଆଉ ଭଦ୍ରଲୋକ। ତାଙ୍କ କଣ୍ଠସ୍ୱର ମଧ୍ୟ ଖୁବ୍ ଧୀର। ସେ କହୁଥିଲେ, ପିଲାଦିନେ ତାଙ୍କର କ'ଣ ବେମାର ହୋଇଥିଲା। ସେଥିରେ ତାଙ୍କ କଣ୍ଠ ଦୁର୍ବଳ ହୋଇଗଲା। ସେ ସବୁବେଳେ ସାଦା କିନ୍ତୁ ପରିଷ୍କାର ପୋଷାକ ପିନ୍ଧୁଥିଲେ। ମୋ ପରି ତାଙ୍କ ଆଖି ମଧ୍ୟ ଖରାପ। ସେଥିପାଇଁ ସେ ଉଜ୍ଜ୍ୱଳ ଆଲୁଅରେ ରଙ୍ଗୀନ ଚଷମା ବ୍ୟବହାର କରନ୍ତି।''

''ଆଚ୍ଛା, ଆପଣଙ୍କ ବାପା ଫ୍ରାନ୍‌ସ୍ ଗଲାପରେ କ'ଣ ହେଲା?''

''ମିଷ୍ଟର୍ ଆଞ୍ଜେଲ ଆମ ଘରକୁ ପୁଣି ଆସିଲେ, ଆଉ ବାପା ଫେରିବା ଆଗରୁ ଆମ ବିବାହ କାମ ଶେଷ କରିଦେବାକୁ ପ୍ରସ୍ତାବ ଦେଲେ। ସେ ଖୁବ୍ ବ୍ୟଗ୍ର ହୋଇପଡ଼ିଥିଲେ। ଟେଷ୍ଟାମେଣ୍ଟ ଛୁଇଁ ମୋତେ

ଶପଥ କରିବାକୁ କହିଲେ ଯେ ଯାହା କିଛି ଘଟୁ ନା କାହିଁକି, ମୁଁ ଯେପରି ତାଙ୍କପ୍ରତି ଅନୁରକ୍ତ ରହେ। ଏପରି ନିୟମ କରିବାକୁ ମୋତେ କହିବାଟା ଯଥାର୍ଥ ବୋଲି ମାଆ ମତ ଦେଲେ। ଏଇଟା ତାଙ୍କର ଗାଢ଼ ପ୍ରେମର ଚିହ୍ନ ବୋଲି ସେ କହିଲେ। ଆରମ୍ଭରୁ ମାଆ ତାଙ୍କୁ ସମର୍ଥନ କରୁଥିଲେ। ଏପରିକି ମୋ ଅପେକ୍ଷା ସେ ତାଙ୍କୁ ଅଧିକ ଭଲପାଉଥିଲେ। ସେଇ ସପ୍ତାହ ଭିତରେ ବାହାଘର ଶେଷ କରିବା କଥା ସେମାନେ କଥାବାର୍ତ୍ତା ହେଲେ। ମୁଁ କିନ୍ତୁ ବାପାଙ୍କ କଥା ଉଠାଇଲି। ବାପାଙ୍କ କଥା ଚିନ୍ତାକରିବା ଦର୍କାର ନାହିଁ ବୋଲି ସେ ଦୁହେଁ କହିଲେ– ତାଙ୍କୁ ପରେ କହିଦେଲେ ଚଳିବ। ମାଆ କହିଲେ, ବାପାଙ୍କ କଥା ସେ ବୁଝିବେ। ମୋତେ କିନ୍ତୁ କଥାଟା ଭଲଲାଗିଲା ନାହିଁ। ବାପା ମୋ'ଠୁ ମୋଟେ ଅଳ୍ପ ବଡ଼। ତେଣୁ ତାଙ୍କ ଅନୁମତି ନେବାକୁ କହିବାଟା ହାସ୍ୟକର ହୋଇପାରେ; କିନ୍ତୁ ମୁଁ ତାଙ୍କୁ ଠକିଦେଇ କିଛି କରିବାକୁ ପସନ୍ଦ କଲିନାହିଁ। ତେଣୁ ମୁଁ ତାଙ୍କ ପାଖକୁ ଚିଠି ଲେଖିଲି। ସେ ଫ୍ରାନ୍‌ସର ବୋର୍‌ଡେକ୍‌ସରେ ଥିଲେ; କିନ୍ତୁ ଚିଠିଟା ଆମ ବାହାଘର ଦିନ ସକାଳେ ଫେରିଆସିଲା।''

''ଆପଣଙ୍କ ବାପା ତେବେ ଚିଠି ପାଇଲେ ନାହିଁ?''

''ହଁ ଆଜ୍ଞା! ଚିଠି ପହଞ୍ଚିବାର ଠିକ୍ ପୂର୍ବରୁ ସେ ଇଂଲଣ୍ଡ ଆସିବା ପାଇଁ ଫ୍ରାନ୍‌ସ ଛାଡ଼ିଦେଇଥିଲେ।''

''ବଡ଼ ଦୁଃଖର କଥା। ଆପଣଙ୍କ ବାହାଘର ତେବେ ଶୁକ୍ରବାରକୁ ସ୍ଥିର ହୋଇଥିଲା। କ'ଣ କୌଣସି ଗିର୍ଜାରେ ହେବାର ଥିଲା?''

''ହଁ, କିଙ୍ଗ୍‌ସ କ୍ରସ୍ ଗିର୍ଜାରେ। ତା'ପରେ ଆମର ସେଣ୍ଟ ପାନ୍‌କ୍ରାସ୍ ହୋଟେଲ୍‌ରେ ଜଳଖିଆ ଖାଇବାର ଥିଲା। ହୋମର୍ ଗୋଟେ ଦି'ଚକିଆ ଘୋଡ଼ା ଗାଡ଼ିରେ ଆସି ଆମ ଘରେ ପହଞ୍ଚିଲେ। ମାଆ ଆଉ ମୁଁ ସେଥିରେ ବସିଲୁ। ସେଠି ଆଉ ଗୋଟେ ମାତ୍ର ଚାରିଚକିଆ ଗାଡ଼ି ଥିଲା। ସେ ସେଥିରେ ବସିଲେ। ଆମେ ଆଗ ଗିର୍ଜାରେ ପହଞ୍ଚିଲୁ। ଆଉ ଗାଡ଼ିଟା ପହଞ୍ଚିଲା; କିନ୍ତୁ ସେ ଗାଡ଼ିରୁ ଓହ୍ଲାଇଲେ ନାହିଁ। ଶେଷରେ ଗାଡ଼ିବାଲା ତଳକୁ ଆସି ଭିତରକୁ ଚାହିଁଲା। ଗାଡ଼ି ଭିତରେ କେହି ନାହିଁ। ଗାଡ଼ିବାଲା କହିଲା, ତାଙ୍କର କ'ଣ ହେଲା ସେ କିଛି ବୁଝିପାରୁନାହିଁ; କାରଣ ସେ ଗାଡ଼ି ଭିତରକୁ ଯିବା ଗାଡ଼ିବାଲା ନିଜ ଆଖିରେ ଦେଖିଛି।

ଏଇଟା ଗଲା ଶୁକ୍ରବାରର ଘଟଣା। ତା'ପରେ ତାଙ୍କର କଣ ହେଲା ମୁଁ କିଛି ଜାଣିପାରିନାହିଁ।''

''ମୁଁ ଦେଖୁଛି ଆପଣଙ୍କୁ ବଡ଼ ଅପମାନିତ କରାଯାଇଛି।''

''ନା ନା, ମିଷ୍ଟର୍ ହୋମ୍‌ସ ! ସେ ଅତି ଭଲ। ଏମିତି ବ୍ୟବହାର ସେ କେବେ କରିବେ ନାହିଁ। ସକାଳ ସାରା ସେ ମୋତେ କହିଛନ୍ତି, ଯାହା କିଛି ହେଉ ନା କାହିଁକି, ମୁଁ ଯେମିତି ତାଙ୍କ ପ୍ରତି ଅନୁରକ୍ତ ରହେ। ଏପରିକି ଯଦି କିଛି ଅପ୍ରତ୍ୟାଶିତ ଘଟଣା ଘଟି ଆମର ବିଚ୍ଛେଦ ହୋଇଯାଏ, ତେବେ ମୁଁ ଯେମିତି ମନେରଖେ ଯେ ତାଙ୍କ ସଙ୍ଗେ ମୋର ନିର୍ବନ୍ଧ ସରିଛି। ନିକଟ-ଭବିଷ୍ୟତରେ ସେଇ ନିର୍ବନ୍ଧବଳରେ ସେ ମୋତେ ପାଇପାରିବେ। ବାହାଘର ଦିନ ସକାଳୁ ଏ କଥାଗୁଡ଼ା ବାଜେ ଜଣାଯାଉଥିଲା; କିନ୍ତୁ ଏସବୁ ଘଟଣା ପରେ ଜଣାଗଲା କଥାଗୁଡ଼ାକର ମୂଲ୍ୟ ଅଛି।''

''ନିଶ୍ଚୟ ଅଛି। ଆପଣ ତେବେ ଭାବୁଛନ୍ତି ତାଙ୍କ ଉପରେ କୌଣସି ଅଜଣା ବିପଦ ପଡ଼ିଛି ?''

''ହଁ, ମୁଁ ଭାବୁଛି ସେ କିଛି ବିପଦର ଆଶଙ୍କା କରୁଥିଲେ; ନ ହେଲେ ସେ ଏମିତି କଥା କହି ନ ଥାନ୍ତେ। ତା'ପରେ ମୁଁ ଦେଖିଲି, ସେ ଯାହା ଆଶଙ୍କା କରୁଥିଲେ, ସେଇଆ ଘଟିଲା।''

''ବିପଦଟା କ'ଣ ହୋଇପାରେ ଆପଣଙ୍କର କିଛି ଧାରଣା ଅଛି ?''

''ନା।''

''ଆଉ ଗୋଟେ ପ୍ରଶ୍ନ। ଆପଣଙ୍କ ମାଆ ଘଟଣାଟା କେମିତି ଗ୍ରହଣ କଲେ ?''

''ସେ ଖୁବ୍ ରାଗିଗଲେ, ଆଉ ସେ ବିଷୟରେ କେବେ ପାଟି ପିଟେଇବାକୁ ମୋତେ ମନାକରିଦେଲେ।''

''ଆଉ ଆପଣଙ୍କ ବାପା ? ଆପଣ ତାଙ୍କୁ ଏ କଥା କହିଥିଲେ ?''

''ହଁ, ତାଙ୍କର ଧାରଣା କିଛି ଗୋଟେ ଘଟିଯାଇଛି ଏବଂ ଖୁବ୍ ଶୀଘ୍ର ମୁଁ ପୁଣି ହୋମର୍‌ଙ୍କ ଖବର ପାଇବି। ସେ କହିଲେ, ମୋତେ ଗିର୍ଜାଯାଏ ଆଣି ସେଠୁ ଛାଡ଼ି ଚାଲିଯିବାରେ କାହାର କି ସ୍ୱାର୍ଥ ଅଛି ? ଯଦି ସେ ମୋ'ଠୁ ଟଙ୍କା ଧାର ନେଇଥାନ୍ତେ କିମ୍ବା ମତେ ବିବାହ କରି ମୋ ପଇସା ନେଇ ଖର୍ଚ୍ଚ କରିପକାଇଥାନ୍ତେ, ତେବେ ଏମିତି ଛାଡ଼ି ଚାଲିଯିବାର

କିଛି କାରଣ ଥାନ୍ତା; କିନ୍ତୁ ପଇସାପତ୍ର ବାବଦରେ ହୋମରଙ୍କ ଅବସ୍ଥା ଖୁବ୍ ଭଲ। ମୋ'ଠାରୁ ଗୋଟେ ଶିଲିଂ ବି ସେ ଚାହାନ୍ତି ନାହିଁ। ତେବେ ତାଙ୍କର କ'ଣ ହୋଇଥାଇପାରେ ? ସେ କଥା ଭାବି ମୁଁ ବାୟାଣୀ ପରି ହୋଇଗଲିଣି। ରାତିରେ ମୋତେ ନିଦ ନାହିଁ।'' ଏତିକି କହି ସେ ମୁହଁରେ ରୁମାଲ ଦେଇ କଇଁକଇଁ ହୋଇ କାନ୍ଦିଉଠିଲେ।

ଚଉକିରୁ ଉଠି ହୋମ୍ କହିଲେ, ''ମୁଁ ଘଟଣାଟାର ଅନୁସନ୍ଧାନ କରିବି। ଆମେ କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚିବା, ଏଥିରେ ସନ୍ଦେହ ନାହିଁ। ବର୍ତ୍ତମାନଠୁ ଦାୟିତ୍ୱ ମୋ ଉପରେ ରହିଲା। ଆପଣ ଆଉ ସେ ବିଷୟରେ ମୁଣ୍ଡ ଖେଳାନ୍ତୁ ନାହିଁ। ବିଶେଷତଃ ହୋମର୍ ଯେମିତି ଆପଣଙ୍କ ଜୀବନପଥରୁ ଦୂରେଇଯାଇଛନ୍ତି, ଆପଣ ସେମିତି ତାଙ୍କୁ ମନରୁ ଦୂରେଇଦେବାକୁ ଚେଷ୍ଟାକରନ୍ତୁ।''

''ତେବେ ଆପଣ କ'ଣ ଭାବୁଛନ୍ତି ମୁଁ ଆଉ ତାଙ୍କୁ ଦେଖିବି ନାହିଁ ?''

''ବୋଧହୁଏ ନୁହେଁ।''

''ତେବେ ତାଙ୍କର କ'ଣ ହୋଇଛି ?''

''ସେ କଥା ମୋ ହାତରେ ଛାଡ଼ିଦିଅନ୍ତୁ। ହଁ, ହୋମରଙ୍କର ସଠିକ୍ ବର୍ଣ୍ଣନା, ଆଉ ତାଙ୍କ ଲେଖା ଚିଠି କିଛି ମୋର ଦରକାର।''

''ଗଲା ଶନିବାର ଖବରକାଗଜରେ ମୁଁ ଗୋଟେ ବିଜ୍ଞାପନ ଦେଇଥିଲି। ଏଇଟି ସେ କାଗଜ, ଆଉ ଏଇ ତାଙ୍କର ଚାରିଖଣ୍ଡ ଚିଠି।''

''ଧନ୍ୟବାଦ ! ଆପଣଙ୍କ ଠିକଣା ?''

''ଏକତିରିଶ ନମ୍ବର ଲିଅନ୍‌ପ୍ଲେସ୍, କାମ୍ବରଉଏଲ୍।''

''ଆଉ ଆପଣଙ୍କ ବାପାଙ୍କ ବ୍ୟବସାୟ ଜାଗାର ଠିକଣା ?''

''ଉଏଷ୍ଟ୍ ହାଉସ୍ ଆଉ ମାରବାଙ୍କ୍।''

''ଧନ୍ୟବାଦ ! ଆପଣ ସବୁକଥା ଟିକିନିଖି କହିଛନ୍ତି। ଏଇ କାଗଜପତ୍ର ମୋତେ ଦେଇଯାଆନ୍ତୁ। ଆପଣଙ୍କୁ ଯେଉଁ ଉପଦେଶ ଦେଇଛି, ତା ମନେ ରଖିଥିବେ। ଯାହା କିଛି ଘଟିଯାଇଛି, ତାକୁ ପୂରାପୂରି ଭୁଲିଯାଆନ୍ତୁ।''

''ଆପଣଙ୍କ ଦୟା ଅସୀମ; କିନ୍ତୁ ମୁଁ ତାଙ୍କୁ ଭୁଲିପାରିବି ନାହିଁ। ତାଙ୍କ ପାଇଁ ମୁଁ ଅପେକ୍ଷା କରି ରହିବି। ଯେତେବେଳେ ସେ ଫେରିବେ ମୋତେ ପାଇପାରିବେ।''

ଭଦ୍ରମହିଳାଙ୍କ ଉଦାସ ମୁହଁରେ ସରଳ ବିଶ୍ୱାସର ଦୃଢ଼ତା ଦେଖି ଆମେ ମୁଗ୍ଧ ହୋଇଗଲୁ। ସେ କାଗଜପତ୍ର ସବୁ ଟେବୁଲ୍ ଉପରେ ରଖିଦେଇ ଚାଲିଗଲେ। କହିଗଲେ, ଯେତେବେଳେ ପୁଣି ଡକାଇଲେ ସେ ଆସିବେ।

କେତେକ ମିନିଟ୍‌ଯାଏ ସେରଲକ୍ ହୋମ୍‌ସ ଛାତ ଆଡ଼କୁ ଚାହିଁ ଚୁପ୍‌ଚାପ୍ ବସିଗଲେ। ତା'ପରେ ଥାକରୁ ପୁରୁଣା ପାଇପଟା ଆଣି ଲଗାଇଲେ। ମୁହଁରୁ କଳା ବଉଦ ପରି ଧୂଆଁ ବାହାରୁଥାଏ। ଆଖିରେ ଅବସାଦର ଚିହ୍ନ।

କିଛି ସମୟ ପରେ ସେ କହିଲେ, ''ଭଦ୍ରମହିଳାଙ୍କ ସମସ୍ୟାଠାରୁ ଭଦ୍ରମହିଳା ନିଜେ ବଡ଼ କୌତୂହଳପ୍ରଦ। ମୋ ନୋଟ୍‌ବହିରୁ ତମେ ଏଇପରିକା କେଶ୍ ପାଇପାରିବ। ତେବେ ଏ କେଶ୍‌ଟାରେ ଗୋଟେ ଦୁଇଟା ନୂଆ ଜିନିଷ ଅଛି।''

''ତୁମେ ଭଦ୍ରମହିଳାଙ୍କୁ ଦେଖି ଅନେକ କିଛି ଜାଣିପାରିଲ; ଅଥଚ ମୋତେ କିଛି ଦେଖାଗଲା ନାହିଁ।''

''ତା ନୁହେଁ ଉଆଟ୍‌ସନ୍! ତୁମର ତେଣେ ନଜର ନାହିଁ। କିପରି ଦେଖିବାକୁ ହେବ, ତୁମେ ଜାଣନା; ତେଣୁ ଯେଉଁଗୁଡ଼ା ଗୁରୁତ୍ୱପୂର୍ଣ୍ଣ ସେ ସବୁ ତୁମ ଆଖିରେ ପଡ଼ିଲା ନାହିଁ। ଜାମାର ହାତ, ଆଙ୍ଗୁଠି, ନଖ, ଜୋତାଫିତାରୁ ମଧ୍ୟ ଅନେକ କିଛି ଜାଣିହେବ। ଆଚ୍ଛା, ଭଦ୍ରମହିଳାଙ୍କ ବେଶଭୂଷାରୁ ତୁମେ କ'ଣ ଦେଖିଲ ?''

''ଦେଖିଲି ତାଙ୍କ ମୁଣ୍ଡରେ ସ୍ଲେଟ୍ ରଙ୍ଗର ଟୋପି। ସେଥିରେ ଇଟା ରଙ୍ଗର ପର। ତାଙ୍କ କୁରୁତାର ରଙ୍ଗ କଳା। ତା ଉପରେ ମାଟିଆ ରଙ୍ଗର ପୋଷାକ, ବେକ ଏବଂ ହାତରେ ନାଲି ରଙ୍ଗର ଧାର। ହାତର ଗ୍ଲୋଭସ୍ ଧୂସର ରଙ୍ଗର ଏବଂ ଡାହାଣ ହାତ ବିଶି ଆଙ୍ଗୁଠି ପାଖରେ ଚିରା। ତାଙ୍କ ଜୋତାଆଡ଼େ ମୋର ନଜର ନାହିଁ। ତାଙ୍କ କାନରେ ଛୋଟ ଗୋଲ ଇଅରିଙ୍ଗ୍। ମୋଟରେ ବେଶଭୂଷାରୁ ଜଣାଗଲା ତାଙ୍କ ଅବସ୍ଥା ସ୍ୱଚ୍ଛଳ।''

''ବାଃ, ତୁମେ ତ ବେଶ୍ ସୁନ୍ଦର ଆଗେଇଛ ଉଆଟ୍‌ସନ୍! ଅବଶ୍ୟ ଯାହା ସବୁ ଗୁରୁତ୍ୱପୂର୍ଣ୍ଣ ସେସବୁ ତୁମେ ଛାଡ଼ିଯାଇଛ; କିନ୍ତୁ ଲକ୍ଷ୍ୟ କରିବାର ଧାରାଟା ତୁମେ ଠିକ୍ ଧରିପାରିଛ। ବିଶେଷତଃ ବିଭିନ୍ନ ରଙ୍ଗ

ଦେଖିବାରେ ତୁମ ଆଖି ଖୁବ୍ ତୀବ୍ର। ତେବେ କଥା ହେଲା, କୌଣସି ସାଧାରଣ ଜିନିଷ ଉପରେ କେବେ ନିର୍ଭର କରିବ ନାହିଁ। ଚିକ୍କଣିଖି କରି ଦେଖିବାରେ ମନ ଦେବ। ମୋର ଦୃଷ୍ଟି ପ୍ରଥମେ ଯେକୌଣସି ନାରୀର କୁରୁତା ହାତ ଉପରେ ପଡ଼େ। କୌଣସି ପୁରୁଷ ହେଲେ ତା ପ୍ୟାଣ୍ଟର ଆଣ୍ଠୁ ଉପରେ ଦୃଷ୍ଟି ପଡ଼େ। ଏଇ ଭଦ୍ରମହିଳାଙ୍କ କୁରୁତା ହାତରେ ଥିବା ମଇଳା ଭାଙ୍ଗ ତୁମେ ଲକ୍ଷ୍ୟ କରିଥିବ। କଟଟିର ଟିକିଏ ଉପରକୁ ଦୁଇଟା ଭାଙ୍ଗ। ଟାଇପିଷ୍ଟର ହାତର ସେଇ ଅଂଶଟା ଟେବୁଲ୍ ଉପରେ ରହେ। ହାତସିଲେଇକଳରେ ମଧ୍ୟ ଏଇଭଳି ଚିହ୍ନ ହୋଇଥାଏ; କିନ୍ତୁ ସେଟା କେବଳ ବାଁ ହାତରେ। ତା'ପରେ ମୁଁ ତାଙ୍କ ମୁହଁକୁ ଚାହିଁଲି। ତାଙ୍କ ନାକ ଦୁଇପାଖରେ ଦାଗ ଦେଖି ମୁଁ ମତ ଦେଲି ଯେ ତାଙ୍କର ଦୃଷ୍ଟିଶକ୍ତି ଖରାପ, ଆଉ ସେ ଟାଇପ୍ କାମ କରନ୍ତି। ସେ ଏ କଥାରେ ଆଶ୍ଚର୍ଯ୍ୟ ହୋଇଗଲେ।''

''ମୁଁ ବି ତ ଆଶ୍ଚର୍ଯ୍ୟ ହୋଇଗଲି।''

''କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ତା'ପରେ ମୁଁ ତାଙ୍କ ଜୋତା ଦେଖି ବିସ୍ମିତ ହୋଇଗଲି; ମନରେ କୌତୂହଳ ମଧ୍ୟ ଆସିଲା। ଜୋତା ଦୁଇଟା ଭିତରେ ବିଶେଷ କିଛି ପାର୍ଥକ୍ୟ ନ ଥିଲେ ବି ଗୋଟାକର ପଞ୍ଝା କମକମିଆ, ଅଥଚ ଆଉ ଗୋଟେ ସାଦା। ଗୋଟାକର ତଳ ବୋତାମ ଦୁଇଟା ଦିଆଯାଇଥିଲା; କିନ୍ତୁ ଆର ପଟକର ପ୍ରଥମ, ତୃତୀୟ ଆଉ ପଞ୍ଚମ ବୋତାମ ଦିଆଯାଇଥିଲା। ଏଥିରୁ କ'ଣ ଜଣାଯାଉଛି ? ଜଣେ ଭଦ୍ରମହିଳା ବେଶ୍ ପରିଷ୍କାର ପୋଷାକ ପିନ୍ଧି ଘରୁ ବାହାରିଲେ; ଅଥଚ ଜୋତା ଦୁଇଟା ନିହାତି ଖାପଛଡ଼ା, ବୋତାମ ଅଧା ଦିଆଯାଇଛି। ତେଣୁ ସେ ଯେ ତରତର ହୋଇ ବାହାରିଆସିଛନ୍ତି, ଏ କଥା ଅନୁମାନ କରିବାଟା କିଛି ବଡ଼ ନୁହେଁ।''

ମୁଁ ଖୁବ୍ ଆଗ୍ରହରେ ପଚାରିଲି, ''ଆଚ୍ଛା, ଆଉ କ'ଣ ?''

''ସେ ଆସିବା ପାଇଁ ପୋଷାକ ପିନ୍ଧି ବାହାରିବା ପରେ କିଛି ଲେଖିଥିଲେ। ତୁମେ ଅନୁମାନ କରିଥିବ, ତାଙ୍କ ଟିପରେ କାଳି ଲାଗିଥିଲା। ତରତରରେ ସେ କଲମଟା ଦୁଆତରେ ବୁଡ଼ାଇ ଦେଇଛନ୍ତି। ତେଣୁ କଲମର କାଳି ଲାଗି ତାଙ୍କ ଟିପରେ ଲାଗିଛି। ଛାଡ଼, ଏ ତ ହେଲା

ସାଧାରଣ କଥା। ଏଥର ଆମେ ତାଙ୍କ ସମସ୍ୟା ଦେଖିବା। ଆଚ୍ଛା ଉଆଟ୍‌ସନ୍, ଦୟାକରି ହୋମର୍ ଆଞ୍ଜେଲଙ୍କ ଉପର ବର୍ଣ୍ଣନାଟା ପଢ଼ିଲ।''

ମୁଁ ଖବରକାଗଜର ଟୁକୁରାଖଣ୍ଡ ଆଲୁଅ ପାଖକୁ ଧରି ପଢ଼ିଲି। ଲେଖାଥିଲା, ''ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ ଘୋଷଣା: ଗତ ଚଉଦ ତାରିଖ ଦିନ ହୋମର୍ ଆଞ୍ଜେଲ ନାମକ ଭଦ୍ରବ୍ୟକ୍ତି କେଉଁଆଡ଼େ ଚାଲିଯାଇଛନ୍ତି। ତାଙ୍କର ଉଚ୍ଚତା ପ୍ରାୟ ପାଞ୍ଚ ଫୁଟ ସାତ ଇଞ୍ଚ, ଦେହର ରଙ୍ଗ ଗୋରା, ମୁଣ୍ଡରେ କଳା ବାଳ, ମଝିରେ ସାମାନ୍ୟ ଚନ୍ଦା, ମୁହଁରେ ନିଶ ଓ ଦାଢ଼ି ଅଛି। ସେ ରଙ୍ଗୀନ୍ ଚଷମା ବ୍ୟବହାର କରନ୍ତି। ଲିଡେନ୍‌ହଲ୍ ଷ୍ଟ୍ରୀଟ୍‌ର କୌଣସି ଅଫିସରେ ସେ କାମ କରନ୍ତି। ଯଦି କେହି . . .।''

''ସେତିକି ଥାଉ। ଆଉ ଏ ଚିଠିଗୁଡ଼ା– ଏଗୁଡ଼ା ଅତି ସାଧାରଣ। ହୋମର୍‌ଙ୍କ ବିଷୟରେ ଏଥିରେ କିଛି ସୂତ୍ର ନାହିଁ। ତେବେ ଗୋଟେ ବିଷୟ ଲକ୍ଷ୍ୟ କରିବା କଥା– ତୁମେ ବୋଧହୁଏ ଲକ୍ଷ୍ୟ କରିଥିବ।''

''ହଁ, ସବୁଗୁଡ଼ାକ ଚିଠି ଟାଇପ୍ କରାଯାଇଛି।''

''ଖାଲି ସେତିକି ନୁହେଁ, ଦସ୍ତଖତଟା ମଧ୍ୟ ଟାଇପ୍ କରାଯାଇଛି। ଚିଠିଟାରେ ତାରିଖ ଦିଆଯାଇଛି; କିନ୍ତୁ କୌଣସି ଠିକଣା ନାହିଁ। କେବଳ ଲିଡେନ୍‌ହଲ୍ ଷ୍ଟ୍ରୀଟ୍ ବୋଲି ଲେଖାଅଛି। ସେଇଟା ଅର୍ଥହୀନ। ଦସ୍ତଖତଟାରୁ ଅନେକ କିଛି ଜାଣିହେବ। ବାସ୍ତବରେ ସେଇଟା ହେଲା ପ୍ରମାଣ।''

''କାହାର ପ୍ରମାଣ ?''

''ଦସ୍ତଖତଟାର କେଶ୍ ସହିତ କେତେ ସମ୍ବନ୍ଧ ଅଛି, ବୁଝିପାରିଲନାହିଁ ?''

''ଭବିଷ୍ୟତରେ ଦର୍କାର ପଡ଼ିଲେ ଚିଠିଗୁଡ଼ାକ ସେ ଲେଖିନି ବୋଲି କହିବ। ତା'ଛଡ଼ା ଆଉ କିଛି ସମ୍ପର୍କ ଥିଲାପରି ମୁଁ ଦେଖୁନାହିଁ।''

''ନା ନା, କଥାଟା ଆହୁରି ଭିତରେ ଅଛି। ଯାହାହେଉ, ମୁଁ ଏବେ ଦୁଇଟା ଚିଠି ଲେଖୁଛି। ସେ ଚିଠି ଘଟଣାଟାର ସମାଧାନ କରିଦେବ। ଖଣ୍ଡେ ଚିଠି ଏକ ବ୍ୟବସାୟ ପ୍ରତିଷ୍ଠାନକୁ; ଆଉ ଖଣ୍ଡେ ଭଦ୍ରମହିଳାଙ୍କ ସାବତବାପାଙ୍କ ପାଖକୁ। କାଲି ସନ୍ଧ୍ୟାରେ ଏଠି ମୋ ସାଙ୍ଗେ ଦେଖାକରିବାକୁ ମୁଁ ତାଙ୍କ ପାଖକୁ ଲେଖିଛି। ଚିଠିର ଉତ୍ତର ନ ଆସିବାଯାଏ ଆମର ଆଉ କିଛି କରିବାର ନାହିଁ। ତେଣୁ ବର୍ତ୍ତମାନ ପାଇଁ ସମସ୍ୟାଟା ଏଇଠି ରହୁ।''

ମୋ ବନ୍ଧୁଙ୍କ ଚିନ୍ତାଶକ୍ତି ଆଉ କାର୍ଯ୍ୟଦକ୍ଷତା ଉପରେ ମୋର ଯଥେଷ୍ଟ ଭରସା। ମୁଁ ବୁଝିଲି ଯେ ଏଇ ସମସ୍ୟାର ସମାଧାନ ପାଇଁ ସେ ନିଶ୍ଚୟ କିଛି ଦୃଢ଼ ପ୍ରମାଣ ଠିକ୍ କରିଛନ୍ତି। ପୂର୍ବରୁ ସେ କେତେକ କେଶ୍ ବଡ଼ ଦକ୍ଷତାର ସହ ସମାଧାନ କରିବାର ମୁଁ ଦେଖିଛି। ମୋର ବିଶ୍ୱାସ, ଏମିତି କିଛି ସମସ୍ୟା ନାହିଁ, ଯାହା ତାଙ୍କୁ ବଳେଇଯିବ। ମୁଁ ତାଙ୍କଠାରୁ ବିଦାୟ ନେଇ ଫେରିଲି। ତା'ପରଦିନ ସନ୍ଧ୍ୟାରେ ଆସିଲାବେଳକୁ ସେ କୁମାରୀ ମେରୀ ସଦରଲାଣ୍ଡଙ୍କ ନିରୁଦ୍ଦିଷ୍ଟ ସ୍ୱାମୀଙ୍କର ପତ୍ତା ପାଇପାରିଥିବେ ବୋଲି ମୋର ଦୃଢ଼ ଧାରଣା ହେଲା।

ତା' ପରଦିନ ମୋର ଡାକ୍ତରୀ କାମରେ ମୁଁ ଦିନସାରା ବ୍ୟସ୍ତ ରହିଲି। ଗୋଟେ ଖୁବ୍ ଗୁରୁତର ରୋଗୀ ପାଖରେ ମତେ ଜଗିରହିବାକୁ ପଡ଼ିଲା। ତେଣୁ ସନ୍ଧ୍ୟା ଛଅଟା ପୂର୍ବରୁ ମୁଁ ବେକର୍ ଷ୍ଟ୍ରୀଟ୍କୁ ଯାଇପାରିଲି ନାହିଁ। ପ୍ରାୟ ଛଅଟା ବେଳକୁ ତରତର ହୋଇ ଗୋଟେ ଗାଡ଼ିରେ ବସି ଚାଲିଲି। ବେକର୍ ଷ୍ଟ୍ରୀଟ୍‌ରେ ପହଞ୍ଚି ଦେଖିଲି ହୋମ୍ ଏକା। ଗୋଟେ ଚଉକି ଉପରେ ତାଙ୍କ ପତଳା ଦେହଟା ଅଧା ଶୋଇବା ଅବସ୍ଥାରେ ରହିଛି। ଟେବୁଲ୍ ଉପରେ ଗୁଡ଼େ ବୋତଲ ଆଉ କାଚ ନଳି। ଘରେ ହାଇଡ୍ରୋକ୍ଲୋରିକ୍ ଏସିଡ୍‌ର ଗନ୍ଧ। ବୁଝିଲି ଦିନସାରା ସେ ରାସାୟନିକ ପରୀକ୍ଷାରେ ଲାଗିଥିଲେ। ଘର ଭିତରେ ପଶୁ ପଶୁ ମୁଁ ପଚାରିଲି, ''କ'ଣ ସମାଧାନ କରିପାରିଛ ?''

''ହଁ, ଏଟା ବାରିଟା ବାଇସଲ୍‌ଫେଟ୍।''

''ନା ନା, ମୁଁ ସେ ସମସ୍ୟାଟା କଥା ପଚାରୁଥିଲି।''

''ଓଃ, ମୁଁ ଭାବିଲି ଏଇ ରାସାୟନିକ ପରୀକ୍ଷା କଥା ପଚାରୁଥିଲ। କାଲି ମୁଁ କହିଥିଲି, ଗୋଟେ ଦୁଇଟା ବିଷୟ ଛାଡ଼ିଦେଲେ ଘଟଣାଟାରେ କୌଣସି ରହସ୍ୟ ନାହିଁ; କିନ୍ତୁ ଅସୁବିଧାଟା ହେଉଛି ଯେ ଦୋଷୀ ସେ ସଇତାନ ପାଇଁ କୌଣସି ଆଇନ୍ କାମ କରିପାରିବ ନାହିଁ।''

''ଲୋକଟା ତେବେ କିଏ ? କୁମାରୀ ସଦରଲାଣ୍ଡଙ୍କୁ ଏମିତି ଛାଡ଼ି ଚାଲିଯିବାର ଉଦ୍ଦେଶ୍ୟ କ'ଣ ?''

ମୋ ମୁହଁରୁ ପ୍ରଶ୍ନଟା ସରିଛି କି ନାହିଁ, ହୋମ୍ ଉତ୍ତର ଦେବାକୁ ପାଟି ଫିଟାଇନାହାନ୍ତି, ଏତିକିବେଳେ ବାହାରେ ଭାରି ପାଦଶବ୍ଦ ଶୁଭିଲା। କବାଟରେ ମଧ ଠକ୍ ଠକ୍ ଆବାଜ ହେଲା। ହୋମ୍ କହିଲେ, ''ଇଏ

ସେ ଝିଅର ସାବତବାପା ମିଷ୍ଟର୍ ଜେମ୍‌ସ ଉଇଣ୍ଡିବ୍ୟାଙ୍କ୍। ଛଅଟାବେଳକୁ ଏଠିକି ଆସିବା ପାଇଁ ସେ ମୋ ପାଖକୁ ଲେଖିଛନ୍ତି।'' ତା'ପରେ ସେ କହିଲେ, ''ଭିତରକୁ ଆସନ୍ତୁ।''

ଜଣେ ସୁସ୍ଥ ସବଳ ମଧ୍ୟମ ଧରଣର ଲୋକ ଘର ଭିତରକୁ ଆସିଲେ। ବୟସ ପ୍ରାୟ ତିରିଶ ବର୍ଷ ହେବ। ଦେହର ରଙ୍ଗ ଗୋରା। ଆଖି ଦୁଇଟା ଖୁବ୍ ତୀକ୍ଷ୍ଣ। ଆମ ଆଡ଼କୁ ପ୍ରଶ୍ନ ପଚାରିଲା ଭଙ୍ଗିରେ ଚାହିଁ ସେ ପାଖ ଚଉକିଟାରେ ବସିଗଲେ।

''ଶୁଭସନ୍ଧ୍ୟା ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍!'' ହୋମ୍ କହିଲେ, ''ଏଇ ଟାଇପ୍‌କରା ଚିଠିଟା ନିଶ୍ଚୟ ଆପଣ ପଠାଇଥିଲେ। ମୋ ସାଥିରେ ଛଅଟାବେଳେ ଦେଖାକରିବା ପାଇଁ ଆପଣ ଏଥିରେ ଲେଖିଛନ୍ତି।''

''ହଁ ଆଜ୍ଞା! ଦୁଃଖର କଥା, ମୋର ଟିକିଏ ଡେରି ହୋଇଗଲା। ଏଇ ସାମାନ୍ୟ କଥାରେ କୁମାରୀ ସଦରଲାଣ୍ଡ ଆପଣଙ୍କୁ ହଇରାଣ କରିଥିବାରୁ ମୁଁ ଦୁଃଖିତ। ମୋ ମତରେ ଏଇ ଘଟଣାଗୁଡ଼ା ପଦାକୁ ଆଣିବା ଠିକ୍ ନୁହେଁ। ମୋ ଇଚ୍ଛା ବିରୁଦ୍ଧରେ ସେ ଏଠିକି ଆସିଛି। ସେ ଭାରି ଏକଜିଦିଆ। ଥରେ ଯାହା ବୁଝିଛି, ସେଇଆ। ଅବଶ୍ୟ ସେ ଆପଣଙ୍କ ପାଖକୁ ଆସିଥିବାରୁ ମୁଁ ବିଶେଷ କିଛି ଭାବୁନାହିଁ, କାରଣ ଆପଣ ସରକାରୀ ପୋଲିସ ନୁହନ୍ତି; କିନ୍ତୁ ଗୋଟାଏ ପାରିବାରିକ ଘଟଣା ଏମିତି ପଦାରେ ପକାଇବାଟା ମୋଟେ ସୁନ୍ଦର ନୁହେଁ। ତା'ଛଡ଼ା ଏଥିରେ ଅଯଥା ଖର୍ଚ୍ଚ; କାରଣ ଆପଣ ହୋମର୍ ଆଞ୍ଜେଲଙ୍କୁ ଖୋଜି ବାହାର କରିବେ କେମିତି ?''

''ବରଂ ଠିକ୍ ତାର ବିପରୀତ।'' ଧୀର ସ୍ଥିର ଭାବରେ ହୋମ୍ କହିଲେ, ''ହୋମର୍ ଆଞ୍ଜେଲଙ୍କୁ ବାହାର କରିପାରିବି ବୋଲି ମୋର ଦୃଢ଼ ଆଶା; ତାର ଯଥେଷ୍ଟ କାରଣ ମଧ୍ୟ ଅଛି।''

କଥାଟା ଶୁଣି ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍ ଚମକି ପଡ଼ିଲେ। ତାଙ୍କ ହାତରୁ ଗ୍ଲୋଭ୍‌ସ୍ ଦୁଇଟା ପଡ଼ିଗଲା। ତା ପରେ ସେ କହିଲେ, ''ତା ହେଲେ ମୁଁ ବିଶେଷ ଖୁସି ହେବି।''

''ଗୋଟେ ମଜା କଥା ଦେଖନ୍ତୁ। ଯେମିତି କୌଣସି ଲୋକର ହାତଲେଖାରେ କିଛି ନା କିଛି ବିଶେଷତ୍ୱ ଅଛି, ସେହିପରି କୌଣସି ଟାଇପ୍ ମେସିନ୍ ଲେଖାରେ ମଧ୍ୟ କିଛି ନା କିଛି ବିଶେଷତ୍ୱ ଅଛି। ପୂରାପୂରି

ନୂଆ ନ ହେଲେ କୌଣସି ଦୁଇଟା ଟାଇପ୍ ମେସିନ୍‌ର ଲେଖା ମୋଟେ ସମାନ ହେବ ନାହିଁ। କେତେ ଅକ୍ଷର ଅନ୍ୟ ଅକ୍ଷରଠୁ ବେଶି ଘୋରି ହୋଇଯାଏ, ଆଉ କେତେ ଅକ୍ଷରର ଗୋଟେ ପାଖ ଅନ୍ୟ ପାଖ ଅପେକ୍ଷା ବେଶି ଘଷରା ହୋଇଯାଏ। ଆପଣଙ୍କ ଏଇ ଚିଠିରେ 'ଇ' ଅକ୍ଷରଟା ଭଲଭାବେ ଜଣାଯାଉନାହିଁ, 'ଟି' ଅକ୍ଷରଟା ତଳଆଡୁ ଖଣ୍ଡିଆ ହୋଇଛି। ଏଇପରି ଆହୁରି ଚଉଦଟା ଚିହ୍ନ ଅଛି।''

''ଏଇଟା ଆମ ଅଫିସ ମେସିନ୍। ଆମେ ଏଇଥିରେ ସବୁ ଚିଠିପତ୍ର ଟାଇପ୍ କରୁ। ମେସିନ୍‌ଟା ଅବଶ୍ୟ ଟିକିଏ ପୁରୁଣା ଆଉ ଘଷରା ହୋଇଗଲାଣି।''

''ମୁଁ ବର୍ତ୍ତମାନ ଆପଣଙ୍କୁ ଗୋଟେ କୌତୂହଳପୂର୍ଣ୍ଣ ବିଷୟ କହିବି। ବିଭିନ୍ନ ଟାଇପ୍ ମେସିନ୍ ଆଉ ଅପରାଧ ସହିତ ତାର ସଂପର୍କ ବିଷୟରେ ମୁଁ ଗୋଟେ ପ୍ରବନ୍ଧ ଲେଖିବାକୁ ଭାବୁଛି। ଏ ବିଷୟ ପ୍ରତି ମୁଁ ବିଶେଷ ଧ୍ୟାନ ଦେଇନାହିଁ। ଏଠି ମୋ ପାଖରେ ଚାରିଖଣ୍ଡ ଚିଠି ଅଛି। ସବୁଗୁଡ଼ା ନିରୁଦ୍ଦିଷ୍ଟ ହୋମର୍‌ଙ୍କ ନିକଟରୁ ଆସିଛି, ଆଉ ସବୁଗୁଡ଼ା ଟାଇପ୍ କରାଯାଇଛି। ପ୍ରତ୍ୟେକ ଚିଠିରେ 'ଇ' ଅକ୍ଷର ଭଲଭାବରେ ଉଠି ନାହିଁ ଏବଂ 'ଟି'ର ତଳପାଖ ଖଣ୍ଡିଆ। ତା' ଛଡ଼ା ଆପଣ ଯଦି ମୋ ମାଗ୍ନିଫାଇଙ୍ଗ୍ କାଚ ନେଇ ଦେଖିବେ, ଅନ୍ୟ ଯେଉଁ ଚଉଦଟା ଚିହ୍ନ ମୁଁ କହୁଥିଲି, ସେଗୁଡ଼ା ଏ ଚିଠିରେ ଦେଖିବାକୁ ପାଇବେ।''

ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍ ଚଟ୍‌କରି ଚଉକିରୁ ଉଠିପଡ଼ି ତାଙ୍କ ଟୋପିଟା ହାତରେ ଧରି କହିଲେ, ''ଏମିତିକା ଖାମଖିଆଲିଆ କଥାରେ ମୁଁ ସମୟ ନଷ୍ଟ କରିପାରିବି ନାହିଁ। ଆପଣ ଯଦି ଲୋକଟାକୁ ଧରିପାରିବେ ତେବେ ଧରନ୍ତୁ, ତା ପରେ ମୋତେ ଜଣାଇବେ।''

''ନିଶ୍ଚୟ, ନିଶ୍ଚୟ।'' ହୋମ୍ ଉଠିଯାଇ ଦରଜାର ଚାବିଟା ବନ୍ଦ କରିଦେଲେ। ତା ପରେ କହିଲେ, ''ମୁଁ ଆପଣଙ୍କୁ ଜଣାଇଦେଉଛି ଯେ ଲୋକଟାକୁ ମୁଁ ଧରିସାରିଲିଣି ?''

''କ'ଣ କହିଲେ ? କେଉଁଠାରେ ?'' ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍‌ଙ୍କ ମୁହଁ ସେତେବେଳକୁ ଶେତା ପଡ଼ିଗଲାଣି। ଆଖିପତାରେ ଟୋପା ଟୋପା ଝାଳ। ଯନ୍ତା ଭିତର ମୂଷା ପରି ସେ ଚାରିଆଡ଼କୁ କନକନ ହୋଇ ଚାହୁଁଥାନ୍ତି।

ବେଶ୍ ଭଦ୍ରଭାବରେ ହୋମ୍ କହିଲେ, ''ସେ କଥା ହେବନାହିଁ। ଏଥିରୁ ଖସିଯିବାର ବାଟ ନାହିଁ। ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍, ଘଟଣାଟା କାଚପରି ଜଳଜଳ ହୋଇ ଦିଶୁଛି। ଠିକ୍ ଅଛି। ବସନ୍ତୁ! ଆମେ ଘଟଣାଟା ବିଷୟରେ କଥାବାର୍ତ୍ତା ହେବା।''

ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍ ଗୋଟେ ଚଉକିରେ ବସିପଡ଼ିଲେ। ଦେହରେ ଯେମିତି ଜୀବନ ନାହିଁ। ମୁହଁ ଶୁଖି କଳାକାଠ। ଶେଷରେ ଖନେଇ ଖନେଇ କହିଲେ, ''ଏହା କିନ୍ତୁ ଆଇନ ଆଖିରେ କୌଣସି ଅପରାଧ ନୁହେଁ।''

''ବଡ଼ ଦୁଃଖର କଥା, ତା ଅବଶ୍ୟ ସତ। ତେବେ କଥାଟା ଆମ ଭିତରେ ପଡ଼ିଛି। ଏମିତିକା କ୍ରୁର ହୃଦୟହୀନ ଘଟଣା ମୋ ଆଖିରେ କେବେ ପଡ଼ିନି। ଆଚ୍ଛା, ମୁଁ ବର୍ତ୍ତମାନ ଘଟଣାଟା କହିଯାଉଛି। ଭୁଲ ହେଲେ ଆପଣ ପ୍ରତିବାଦ କରିପାରନ୍ତି।''

ଲୋକଟା ଚଉକି ଉପରେ ଲୋଚାହୋଇ ବସିଗଲା। ମୁଣ୍ଡଟା ଛାତି ଉପରକୁ ଲଇଁପଡ଼ିଥାଏ। ହୋମ୍ କାନ୍ଥ ଆଲମିରା ଥାକ ଉପରେ ଗୋଟେ ପାଦ ରଖି ପଛକୁ ଲଇଁପଡ଼ି କହିବାକୁ ଲାଗିଲେ। ଜଣାଗଲା, ଯେମିତି ସେ ଆମକୁ କଥାଟା ନ କହି ନିଜକୁ ନିଜେ କହୁଛନ୍ତି :

''ଜଣେ ଲୋକ ସମ୍ପତ୍ତିଲୋଭରେ ତା'ଠୁ ବୟସରେ ଢେର୍ ବଡ଼ ଜଣେ ନାରୀକୁ ବିବାହ କଲା। ତା'ଛଡ଼ା ତା ଝିଅର ସମ୍ପତ୍ତି ମଧ ଭୋଗକଲା। ଝିଅ ଯେତେ ଦିନ ତାଙ୍କ ପାଖରେ ଥିବ, ତା ସମ୍ପତ୍ତି ସେ ଭୋଗକରୁଥିବ। ଝିଅର ସମ୍ପତ୍ତି ଖୁବ୍ ବେଶି; ତେଣୁ ତାକୁ ବରାବର ପାଖରେ ରଖିବାପାଇଁ ଚେଷ୍ଟା କରିବା ଦରକାର। ଝିଅଟିର ପ୍ରକୃତି ଖୁବ୍ ଭଲ। ସେ ଖୁବ୍ ସ୍ନେହଶୀଳା। ବେଶୀ ଦିନ ତାକୁ ଅବିବାହିତ ଅବସ୍ଥାରେ ପାଖରେ ରଖିବା ସମ୍ଭବ ହେବ ନାହିଁ; କିନ୍ତୁ ତାର ବିବାହ ହୋଇଗଲେ ଲୋକଟା ବର୍ଷକୁ ପ୍ରାୟ ଶହେ ପାଉଣ୍ଡ କରି ହରାଇବ। ତେଣୁ ତାର ବିବାହ ନ ହେବା ପାଇଁ ତାର ସାବତବାପା କ'ଣ କରିବ? ଅନ୍ୟମାନଙ୍କ ସାଥିରେ ମିଳାମିଶା କରିବା ପାଇଁ ସେ ଝିଅକୁ ଘରୁ ବାହାରକୁ ଛାଡ଼ିବ ନାହିଁ; କିନ୍ତୁ କିଛିଦିନ ପରେ ସେ ଦେଖିଲା ଯେ ଝିଅ ଆଉ ମନା ମାନିବନାହିଁ। ଶେଷରେ ସେ କୌଣସି ନାଚଶାଳାକୁ ଯିବାପାଇଁ ଜିଦ୍ ଧରି ବସିଲା। ତାର ସାବତବାପା ଖୁବ୍ ଚାଲାକ। ସେ ତା'ପରେ କ'ଣ କଲା? ସେ ଗୋଟେ ଉପାୟ ଠିକ୍

କଲା । ତା' ସ୍ତ୍ରୀର ସହାୟତାରେ ସେ ନିଜେ ଏକ ଛଦ୍ମବେଶ ଧାରଣ କଲା । ଆଖିରେ ରଙ୍ଗୀନ୍ ଚଷମା ଦେଇ, ମୁହଁରେ ନକଲି ନିଶଦାଢ଼ି ଲଗେଇ, ଧୀର ସ୍ୱରରେ କଥା କହି ସେ ହୋମର୍ ଆଞ୍ଜେଲ ରୂପରେ ଦେଖାଦେଲା । ଝିଅର ଦୃଷ୍ଟିଶକ୍ତି ଟିକିଏ ଖରାପ । ଏହା ତା'ପକ୍ଷରେ ସୁବିଧାଜନକ ହେଲା । ଏଇ ହୋମର୍ ଆଞ୍ଜେଲ ଅନ୍ୟ କାହାରିକୁ ଝିଅଟିର ପ୍ରେମିକ ହେବାକୁ ସୁଯୋଗ ଦେଲାନାହିଁ; ନିଜେ ଝିଅଟିର ପ୍ରେମିକ ସାଜିଲା ।''

''ଆମେ ମଜାରେ ସେଇଟା ଆରମ୍ଭ କରିଥିଲୁ । କଥାଟା ଏତେ ଆଗେଇଯିବ ବୋଲି ଆମେ ଭାବି ନ ଥିଲୁ ।''

''ତା ଅବଶ୍ୟ ସତ ହୋଇପାରେ । ଯାହାହେଉ, ତରୁଣୀଜଣକ ଖୁବ୍ ଆଗେଇଗଲେ । ତାଙ୍କର ସାବତବାପା ଫ୍ରାନ୍ସ ଯାଇଛନ୍ତି ବୋଲି ତାଙ୍କର ଦୃଢ଼ ଧାରଣା । ତେଣୁ ଏ ବିଶ୍ୱାସଘାତକତା ଚାଲିଛି ବୋଲି ସେ ମୋଟେ ସନ୍ଦେହ କରିପାରିଲେ ନାହିଁ । ଭଦ୍ରଲୋକଙ୍କ ବ୍ୟବହାରରେ ସେ ମୁଗ୍ଧ ହୋଇଗଲେ । ସେଥିରେ ପୁଣି ତାଙ୍କ ମା' ଭଦ୍ରଲୋକଙ୍କର ଖୁବ୍ ପ୍ରଶଂସା କଲେ । ତା'ପରେ ମିଷ୍ଟର୍ ଆଞ୍ଜେଲ୍ ତାଙ୍କ ଘରକୁ ଯିବା ଆସିବା କଲେ । ଶେଷରେ ବିବାହ ବିଷୟ ସ୍ଥିର ହୋଇଗଲା । ଉଦ୍ଦେଶ୍ୟ ହେଲା, ତରୁଣୀ ଯେପରି ଅନ୍ୟ କାହା ପ୍ରତି ଆସକ୍ତ ନ ହୁଏ । ଏ ଠକାମି ତ ସବୁଦିନ ପାଇଁ ଚଳିବନାହିଁ; ତେଣୁ ତରୁଣୀଟି ମନରେ ଏପରି ଏକ ଧାରଣା ସୃଷ୍ଟି କରିବାକୁ ହେବ, ଯାହା ଫଳରେ ସେ କିଛିଦିନ ପାଇଁ ଅନ୍ୟ କାହାକୁ ବିବାହ କରିବାକୁ ଇଚ୍ଛା କରିବନାହିଁ । ତେଣୁ ଘଟଣାଟାକୁ ଏକ ନାଟକୀୟ ଭଙ୍ଗୀରେ ଶେଷ କରିବାକୁ ହେବ । ସେଥିପାଇଁ ବାଇବେଲ୍ ଛୁଇଁ ନିୟମ କରିବା ଏବଂ ବିବାହ ଦିନ ସକାଳେ କିଛି ଘଟଣା ଘଟିବା କଥା କୁହାଯାଇଥିଲା । ଜେମ୍ସ୍ ଉଇଣ୍ଡିବ୍ୟାଙ୍କ୍ ଚାହୁଁଥିଲେ ଯେ କୁମାରୀ ସଦର୍‌ଲାଣ୍ଡ୍ ହୋମର୍ ଆଞ୍ଜେଲଙ୍କ ପ୍ରତି ଗାଢ଼ଭାବରେ ଆକୃଷ୍ଟ ହୁଅନ୍ତୁ । ତା'ଛଡ଼ା ହୋମର୍‌ଙ୍କ ଭବିଷ୍ୟତ ବିଷୟରେ ତାଙ୍କୁ ସନ୍ଦେହରେ ବୁଡ଼ାଇ ଦିଆଯାଇଥିଲା । ତେଣୁ ଅନ୍ତତଃ ଦଶ ବର୍ଷଯାଏ ସେ ଅନ୍ୟ କାହାକୁ ବିବାହ କରିବା କଥା ଚିନ୍ତା ବି କରିବେ ନାହିଁ । ସେ କୁମାରୀ ସଦର୍‌ଲାଣ୍ଡ୍‌ଙ୍କୁ ଚର୍ଚ୍ଚଯାଏ ନେଇଗଲେ । ତା'ପରେ ଆଉ କିଛି କରିବାର ନଥିଲା; ତେଣୁ ସେ ଚତୁରତାର ସହ ଖସି ଚାଲିଗଲେ । ଘଟଣାଟା ଏଇଆ ତ ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍ ?''

ମିଷ୍ଟର୍ ଉଇଣ୍ଡିବ୍ୟାଙ୍କ୍ ସେତେବେଳକୁ ପ୍ରକୃତିସ୍ଥ ହୋଇଗଲେଣି। ବେପରୁଆ ଭାବରେ ହସି ସେ ଚଉକିରୁ ଉଠି କହିଲେ, ''ତା ହୋଇପାରେ ବା ନ ପାରେ ମିଷ୍ଟର୍ ହୋମ୍। ଆପଣ ଯଦି ଏତେ ଚାଲାକ, ଆପଣଙ୍କର ବୁଝିବା ଉଚିତ ଯେ ଆପଣ ଆଇନଭଙ୍ଗ କରୁଛନ୍ତି; ମୁଁ ନୁହେଁ। ମୁଁ ଯାହା କିଛି କରିଛି ଆଇନଦୃଷ୍ଟିରୁ ତାହା ଦୋଷାବହ ନୁହେଁ। ଆପଣ କିନ୍ତୁ ଏ ଘରର ଦରଜା ବନ୍ଦ କରି ମତେ ଅନ୍ୟାୟ ଭାବରେ ଅଟକାଇ ରଖିଛନ୍ତି।''

ଘରର ଦରଜା ଖୋଲିଦେଇ ହୋମ୍ କହିଲେ, ''ଅବଶ୍ୟ ଆଇନ ଆପଣଙ୍କର କିଛି କରିପାରିବ ନାହିଁ; ତଥାପି ଦଣ୍ଡ ପାଇବା ପାଇଁ ଆଉ ଅଧିକ ଉପଯୁକ୍ତ ଲୋକ ବୋଧହୁଏ ନ ଥିବେ। ଯଦି ବିଚାରୀ ତରୁଣୀର କେହି ଭାଇ କିମ୍ବା ବନ୍ଧୁ ଥାଆନ୍ତା, ସେ ଆପଣଙ୍କ ପିଠିରେ ଚାବୁକ ବସାଇ ଦିଅନ୍ତା। ମୋ ମହକିଲ ପ୍ରତି ମୋର ବି କର୍ତ୍ତବ୍ୟ ଅଛି। ମୋ ଚାବୁକଟା କାହିଁ?''

ହୋମ୍ ତାଙ୍କ ଚାବୁକଟା ଆଣିବାକୁ ଥାକ ଆଡ଼କୁ ଲମ୍ବା ପହୁଣ୍ଡ ପକେଇ ଆଗେଇଗଲେ। ଆଖିପିଛୁଳାକେ ଲୋକଟା ଘରୁ ବାହାରିଗଲା। ତା'ପରେ ରାସ୍ତାରେ ପ୍ରାଣମୂର୍ଚ୍ଛା ଦୌଡ଼ି ପଳାଇଲା।

ଚଉକି ଉପରେ ପୁଣି ବସିପଡ଼ି ହୋମ୍ କହିଲେ, ''ଲୋକଟା ମସ୍ତବଡ଼ ସୟତାନ। ସେ ଗୋଟାକ ପରେ ଗୋଟେ ଅପରାଧ କରି ଶେଷରେ ଫାଶୀ ଖୁଣ୍ଟରେ ଝୁଲିବ। ଯାହାହେଉ ଏ କେଶ୍‌ଟା ବେଶ୍ କୌତୂହଳପ୍ରଦ।''

ମୁଁ ପଚାରିଲି, ''ତୁମେ କିପରି ଭାବରେ ଘଟଣାଟା ଜାଣିପାରିଲ– ମୁଁ କିଛି ଠିକ୍ ବୁଝିପାରିଲିନାହିଁ।''

''ଏଇ ହୋମର୍ ଆଞ୍ଜେଲ ଲୋକର ବିଚିତ୍ର ବ୍ୟବହାର ପଛରେ କିଛି ରହସ୍ୟ ଅଛି ବୋଲି ପ୍ରଥମରୁହିଁ ମୁଁ ଜାଣିପାରିଲି। ତା ପରେ ଏଟା ମଧ୍ୟ ପରିଷ୍କାର ଜଣାଗଲା ଯେ ଏ ଘଟଣାରେ ତରୁଣୀର ସାବତବାପାହିଁ ଏକମାତ୍ର ଲୋକ, ଯାହାର ଲାଭ ହେବ। ଆଉ ଗୋଟାଏ କଥା ହେଲା, ହୋମର୍ ଆଞ୍ଜେଲ, ଆଉ ଉଇଣ୍ଡିବ୍ୟାଙ୍କ୍ କେତେବେଳେ ହେଲେ ଏକାଠି ଦେଖାଯାଇନାହାନ୍ତି। ଜଣେ ଦେଖାଦେଲେ ଅନ୍ୟ ଜଣକ କାହିଁ? ଏଥିରୁ ଅନେକ ବିଷୟ ଜଣାଗଲା। ସେହିପରି ରଙ୍ଗୀନ୍ ଚଷମା, ନିଶ, ଦାଢ଼ି ଇତ୍ୟାଦି ଛଦ୍ମବେଶର ସୂଚନା ଦେଲା। ସବୁଠୁ ବଡ଼ ଜିନିଷ ହେଲା ଚିଠିରେ

ଟାଇପ୍ କରାଯାଇଥିବା ଦସ୍ତଖତ। ସେଇଠି ମୋ ସନ୍ଦେହ ଦୃଢ଼ ହେଲା। ଦସ୍ତଖତଟା ଟାଇପ୍ କରାହେବାର କାରଣ ହେଲା, ଚିଠି ପଠାଉଥିବା ଲୋକର ହସ୍ତାକ୍ଷର ସହ ତରୁଣୀଟି ଭଲଭାବରେ ପରିଚିତ। ଏଇସବୁ ବିକ୍ଷିପ୍ତ ଘଟଣା ଏବଂ ଆଉ କେତେ ଛୋଟ ଛୋଟ ଘଟଣା ମୋ ସନ୍ଦେହକୁ ସେଇ ଗୋଟାଏ ଆଡ଼କୁ ଟାଣିନେଲା।''

''ଆଚ୍ଛା, ତୁମର ସନ୍ଦେହ ତୁମେ ପରୀକ୍ଷା କଲ କେମିତି ?''

''ଥରେ ଲୋକଟା ମୋ ସନ୍ଦେହ ଭିତରକୁ ଆସିଲା ପରେ ବାକି ରହିଲା କେବଳ ପ୍ରମାଣ। ମୁଁ ଜାଣିଥିଲି ଲୋକଟା ଯେଉଁ ଅନୁଷ୍ଠାନରେ କାମ କରେ। ହୋମର୍ ଆଞ୍ଜେଲ ଚେହେରାର ବର୍ଣ୍ଣନା ମୁଁ କୁମାରୀ ସଦର୍‌ଲାଣ୍ଡଠାରୁ ପାଇଲି। ସେଥିରୁ ଚଷମା, ନିଶ, ଦାଢ଼ି ଆଦିକୁ ବାଦ୍ ଦେଇଦେଲି। ଅବଶିଷ୍ଟ ବର୍ଣ୍ଣନା ସାଙ୍ଗେ ମିଶୁଥିବା ଚେହେରାର କେହି ଲୋକ ସେ ଅନୁଷ୍ଠାନରେ ଅଛି କି ନା, ମୋତେ ଜଣାଇବାକୁ ସେ ଅନୁଷ୍ଠାନକୁ ଚିଠି ଦେଲି। ତା' ଛଡ଼ା ମୋ ସାଥିରେ ଦେଖାକରିବା ପାଇଁ ଏଇ ଲୋକଟା ପାଖକୁ ମଧ୍ୟ ଚିଠି ଦେଲି। ମୁଁ ଯାହା ଆଶା କରୁଥିଲି, ସେଇଆ ହେଲା। ଲୋକଟା ମୋ ପାଖକୁ ଯେଉଁ ଉତ୍ତର ଦେଲା, ସେଟା ମଧ୍ୟ ଟାଇପ୍ କରାହୋଇଥିଲା। ପୂର୍ବର ଟାଇପ୍‌କରା ଚିଠିରେ ଯେଉଁ ସବୁ ଚିହ୍ନ ମୁଁ ଦେଖିବାକୁ ପାଇଥିଲି, ଏ ଚିଠିରେ ମଧ୍ୟ ସେଗୁଡ଼ା ଥିଲା। ସେଇ ଡାକରେ ଉଏଷ୍ଟହାଉସ୍ ଏବଂ ମାରବ୍ୟାଙ୍କ୍ ପ୍ରତିଷ୍ଠାନରୁ ବି ଗୋଟେ ଚିଠି ପାଇଲି। ସେଥିରେ ଲେଖାଥିଲା ଯେ ମୋ ବର୍ଣ୍ଣନା ସାଥିରେ ମିଶୁଥିବା ଚେହେରାର ଲୋକ ଜେମ୍ସ୍ ଉଇଣ୍ଡିବ୍ୟାଙ୍କ୍।''

''ଏଥର ତେବେ କୁମାରୀ ସଦର୍‌ଲାଣ୍ଡଙ୍କ କଥା କ'ଣ ହେବ ?''

''ମୁଁ ତାଙ୍କୁ ଏ କଥା କହିଲେ ସେ ବିଶ୍ୱାସ କରିବେନାହିଁ। ତୁମର ମନେଥିବ, ପାରସ୍ୟ ଭାଷାରେ ଗୋଟେ ପ୍ରବଚନ ଅଛି– 'ବାଘୁଣୀ ପାଖରୁ ତା ଛୁଆକୁ ଟାଣିଆଣିବା ଯେମିତି ବିପଦପୂର୍ଣ୍ଣ, କୌଣସି ସ୍ତ୍ରୀଲୋକ ମନରୁ ଭୁଲ ଧାରଣା ଜୋର୍‌କରି ଦୂରକରିବା ସେମିତି ବିପଦପୂର୍ଣ୍ଣ। ତେଣୁ ଏଇଠି ଏ ଘଟଣାର ପୂର୍ଣ୍ଣଚ୍ଛେଦ।''

□ □ □

# ବସ୍‌କୋମ୍ବର ରହସ୍ୟ

ସେଦିନ ସକାଳେ ମୁଁ ଆଉ ମୋ ସ୍ତ୍ରୀ ବସି ଜଳଖିଆ ଖାଉଥାଉ। ଚାକରାଣୀ ଆଣି ଗୋଟେ ଟେଲିଗ୍ରାମ୍ ବଢ଼ାଇଦେଲା। ଟେଲିଗ୍ରାମ୍‌ଟା ଆସିଥିଲା ସେରଲକ୍ ହୋମ୍‌ଙ୍କ ପାଖରୁ। ଲେଖାଥିଲା, 'ଦିନେ ଦୁଇଦିନ ସମୟ ଦେଇପାରିବ କି? ବସ୍‌କୋମ୍ବ ଉପତ୍ୟକାର ଦୁର୍ଘଟଣା ନେଇ ପଶ୍ଚିମ-ଇଂଲଣ୍ଡରୁ ଏଇମାତ୍ର ଗୋଟେ ଟେଲିଗ୍ରାମ୍ ପାଇଲି। ତୁମେ ମୋ ସାଥିରେ ଆସିପାରିଲେ ଖୁସି ହେବି। ସେଠାର ଜଳବାୟୁ ଆଉ ଦୃଶ୍ୟ ଖୁବ୍ ସୁନ୍ଦର। ଏଗାରଟାବେଳେ ପାଡ଼ିଙ୍ଗ୍‌ଟନ ଷ୍ଟେସନରୁ ବାହାରିବି।'

ସବୁଟା ଶୁଣି ମୋ ସ୍ତ୍ରୀ କହିଲେ, ''କ'ଣ କହୁଛ, ତୁମେ ଯିବ?''

''କିଛି ଠିକ୍ କରିପାରୁନାହିଁ। ଏବେ ମୋ ହାତରେ ଗୁଡ଼ାଏ କାମ ଅଛି।''

''ତୁମ ସହକାରୀ ସେ କାମଗୁଡ଼ା ତୁମପାଇଁ କରିଦେଇପାରିବେ। ଏବେ କେତେଦିନ ହେଲା ତୁମେ କେମିତି ବିରସ ଦିଶୁଛ। ମୁଁ ଭାବୁଛି ବାହାରେ ଟିକିଏ ବୁଲିଆସିଲେ ଭଲ ହେବ। ତା'ଛଡ଼ା ସେରଲକ୍ ହୋମ୍‌ଙ୍କ କେଶ୍‌ଗୁଡ଼ାକରେ ତୁମର ସବୁବେଳେ ଆଗ୍ରହ।''

ହସି ହସି କହିଲି, ''ହଁ, ତାଙ୍କର ଗୋଟାଏ କେଶ୍‌ରୁ ମୁଁ ଯାହା ପାଇଛି, ସେଥିରେ ମୁଁ ତାଙ୍କ କେଶ୍‌ରେ ଆଗ୍ରହୀ ନ ହେଲେ ଅକୃତଜ୍ଞ ହେବି; କିନ୍ତୁ ମୁଁ ଯଦି ଯିବି, ମତେ ସାଙ୍ଗେ ସାଙ୍ଗେ ବାହାରିବାକୁ ପଡ଼ିବ। ଆଉ ମୋତେ ଅଧଘଣ୍ଟାଏ ସମୟ।''

ଆଫଗାନିସ୍ଥାନରେ ଦିନାକେତେ କ୍ୟାମ୍ପ୍‌ରେ କଟେଇଛି। ତେଣୁ କୁଆଡ଼େ ଯିବାପାଇଁ ତୁରନ୍ତ ବାହାରିବାରେ ମୁଁ ଅଭ୍ୟସ୍ତ। ସାଥିରେ ବିଶେଷ କିଛି ଜିନିଷ ନେବାର ନଥିଲା। ତେଣୁ ଅଧଘଣ୍ଟାଏ ଆଗରୁ ମୁଁ କାମ ସାରି ଗୋଟେ ଘୋଡ଼ାଗାଡ଼ିରେ ପାଡ଼ିଙ୍ଗ୍‌ଟନ୍ ଷ୍ଟେସନକୁ ଚାଲିଲି। ସେର୍‌ଲକ୍ ହୋମ୍ ପ୍ଲାଟଫର୍ମରେ ବୁଲୁଥିଲେ। ମୋତେ ଦେଖି ଖୁବ୍ ଖୁସି ହୋଇ କହିଲେ, ''ଧନ୍ୟବାଦ ଓଆଟ୍‌ସନ୍। ଯାହା ଉପରେ ମୁଁ ପୂର୍ଣ୍ଣ ବିଶ୍ୱାସ ରଖିପାରେ,

ସେମିତି ଜଣେ ମୋ ପାଖରେ ଥିଲେ ମୁଁ ଅନେକ ସୁବିଧା ପାଏ। ସ୍ଥାନୀୟ ଲୋକଙ୍କଠାରୁ ଯାହା ସାହାଯ୍ୟ ମିଳେ, ସେ କିଛି ନୁହେଁ; ବରଂ ବେଳେବେଳେ ତାହା ଯୋଗୁଁ ଅନେକ ଭୁଲ ହୋଇଯାଏ। ତୁମେ ସିଟ୍ ଦୁଇଟା ରଖ। ମୁଁ ଟିକେଟ୍ କରି ଆଣୁଛି।''

ଡବା ଭିତରେ କେବଳ ଆମେ ଦୁଇଜଣ। ତା'ଛଡ଼ା ହୋମ୍ ସାଥିରେ ଆଣିଥିବା ଗଦାଏ କାଗଜ। ସେ ଏଇ କାଗଜଗୁଡ଼ା ପଢୁଥାନ୍ତି। ମଝିରେ ମଝିରେ ନୋଟ୍ ଖାତାରେ କିଛି ଲେଖୁଥାନ୍ତି। ଆମେ ରିଡ଼ିଙ୍ଗ୍ ଷ୍ଟେସନ୍ ପାରହୋଇଗଲୁ। ହଠାତ୍ ସେ କାଗଜଗୁଡ଼ା ଗୁଡ଼େଇ ବିଡ଼ା ବାନ୍ଧି ଥୋଇଦେଲେ। ତା'ପରେ ପଚାରିଲେ, ''ତୁମେ କେଶ୍‌ଟା ବିଷୟରେ କିଛି ଶୁଣିଛ ?''

''ଗୋଟେ ଶବ୍ଦ ବି ନୁହେଁ। ଏଇ କେତେଦିନ ହେଲା ମୁଁ ଖବରକାଗଜ ବି ଦେଖିନାହିଁ।''

''ଲଣ୍ଡନର ଖବରକାଗଜରେ ଘଟଣାଟା ବିଷୟରେ ବିଶେଷ କିଛି ଲେଖାନାହିଁ। ଘଟଣାଟା ଟିକିନିଖି କରି ଜାଣିବା ପାଇଁ ମୁଁ ଏଇଲେ କାଗଜଗୁଡ଼ା ଦେଖୁଥିଲି। ଦେଖିଲି, ଏ କେଶ୍‌ଟା ଗୋଟେ ଖୁବ୍ ସରଳ ଘଟଣା, ଯାହାକି ଖୁବ୍ କଠିନ।''

''କଥାଟା ପରସ୍ପରର ଓଲଟା ହୋଇଯାଉଛି।''

''କିନ୍ତୁ କଥାଟା ନିରାଟ ସତ। କୌଣସି ଘଟଣାର ବିଶେଷତ୍ୱ ସେ ଘଟଣା ଅନୁସନ୍ଧାନ କରିବାର ଗୋଟାଏ ସୂତ୍ର। ଯେଉଁ ଅପରାଧରେ କିଛି ବିଶେଷତ୍ୱ ନାହିଁ, ଯାହା ଅତି ସାଧାରଣ, ତାର ଅନୁସନ୍ଧାନ ଖୁବ୍ କଷ୍ଟକର। ଏ ଘଟଣାରେ କିନ୍ତୁ ସେମାନେ ମୃତଲୋକର ପୁଅ ବିରୁଦ୍ଧରେ ଗୋଟାଏ ଟାଣୁଆ କେଶ୍ ଗଢ଼ିଛନ୍ତି।''

''ତା ହେଲେ ଏହା ଏକ ହତ୍ୟାକାଣ୍ଡ ?''

''ହତ୍ୟା ବୋଲି ଧରିନିଆଯାଇଛି। ମୁଁ କିନ୍ତୁ ଘଟଣାଟା ନିଜେ ପରୀକ୍ଷା କରି ନ ଦେଖିବାଯାଏ କିଛି ଠିକ୍ ବୋଲି ଧରି ନେଇ ପାରିବିନାହିଁ। ଘଟଣାଟା ମୁଁ ଯାହା ଜାଣେ ସଂକ୍ଷେପରେ ତୁମକୁ କହୁଛି।''

''ବସ୍‌କୋମ୍ବ ଉପତ୍ୟକା ଏକ ପଲ୍ଲୀ ଅଞ୍ଚଳ। ରସ୍ ସହରଠାରୁ ଏହାର ଦୂରତା ବେଶି ନୁହେଁ। ସେ ଅଞ୍ଚଳର ସବୁଠୁ ବଡ଼ ଜମିମାଲିକ ହେଲେ ମିଷ୍ଟର୍ ଜନ୍ ଟର୍‌ନର୍। ସେ ଅଷ୍ଟ୍ରେଲିଆରେ ରହି ବେଶ୍ ପଇସା

ରୋଜଗାର କରିଥିଲେ। କେତେ ବର୍ଷ ହେଲା ଇଂଲଣ୍ଡକୁ ଫେରିଛନ୍ତି। ତାଙ୍କ ଖମାର ଭିତରୁ ହାଥରଲି ଖମାରକୁ ସେ ମିଷ୍ଟର୍ ଚାର୍ଲସ୍ ମାକାରଥିଙ୍କୁ ଦେଇଛନ୍ତି। ଏଇ ମାକାରଥି ମଧ ଅଷ୍ଟ୍ରେଲିଆରେ ରହୁଥିଲେ। ସେଇଠି ଦୁଇଜଣଙ୍କର ଚିହ୍ନା-ପରିଚୟ; ତେଣୁ ଦେଶକୁ ଫେରିବା ପରେ ସେମାନେ ପରସ୍ପରର ଖୁବ୍ ନିକଟରେ ରହିବାଟା ସ୍ୱାଭାବିକ। ତାଙ୍କ ଭିତରେ ଟର୍‌ନର୍ ହେଲେ ଧନୀ। ତେଣୁ ମାକାରଥି ତାଙ୍କ ପ୍ରଜା ହୋଇ ରହିଲେ; କିନ୍ତୁ ଉଭୟଙ୍କ ମଧରେ ସମତା ଆଉ ବନ୍ଧୁଭାବ ଥିବାର ଜଣାଯାଏ। ଅଧିକାଂଶ ସମୟ ସେମାନେ ଏକାଠି ବସାଉଠା କରନ୍ତି। ମାକାରଥିଙ୍କର ଗୋଟିଏ ମାତ୍ର ପୁଅ। ତାର ବୟସ ଅଠର ବର୍ଷ। ଟର୍‌ନର୍‌ଙ୍କର ସେଇ ବୟସର ଗୋଟିଏ ବୋଲି ଝିଅ। ଉଭୟଙ୍କର ସ୍ତ୍ରୀ ମରିଯାଇଛନ୍ତି। ଦୁହେଁ ପାଖରେ ଥିବା ଇଂରେଜ ପରିବାର ସହ ପ୍ରାୟ ମିଳାମିଶା କରନ୍ତି ନାହିଁ। ଅବଶ୍ୟ ମାକାରଥି ବାପ ପୁଅ ଖେଳପ୍ରିୟ, ଆଉ ବେଳେବେଳେ ପାଖଆଖ ଘୋଡ଼ଦୌଡ଼କୁ ଯାଆନ୍ତି। ତାଙ୍କ ଘରେ ଦୁଇଜଣ ଚାକର। ଜଣେ ପୁରୁଷ, ଆଉ ଜଣେ ବାଳିକା। ଟର୍‌ନର୍‌ଙ୍କ ଘରେ କିନ୍ତୁ ଖୁବ୍ କମ୍‌ରେ ଛଅଜଣ ଚାକର। ଦୁଇ ପରିବାର ବିଷୟରେ ମୁଁ ଏତିକି ମାତ୍ର ଖବର ଜାଣିଛି। ଏଥର ଘଟଣାଟା କହେ।

''ଗଲା ସୋମବାର ତିନି ତାରିଖ ଦିନ ଉପରବେଳା ପ୍ରାୟ ତିନିଟାବେଳେ ମିଷ୍ଟର୍ ମାକାରଥି ତାଙ୍କ ଘରୁ ବାହାରି ବସ୍‌କୋମ୍ ବନ୍ଧ ଆଡ଼େ ଗଲେ। ଏଇ ବନ୍ଧଟି ଗୋଟିଏ ଛୋଟ ହ୍ରଦ। ସେ ଅଞ୍ଚଳ ଦେଇ ଗୋଟେ ଛୋଟ ନଈ ବହିଯାଉଛି। ତା'ରି ପାଣି ପ୍ରସାରିତ ହୋଇ ଏ ହ୍ରଦ ସୃଷ୍ଟି ହୋଇଛି। ସେଦିନ ସକାଳେ ମାକାରଥି ତାଙ୍କ ଚାକର ସାଥିରେ ରସ୍ ସହରକୁ ଯାଇଥିଲେ। ଚାକର ଆଗରେ ସେ କହୁଥିଲେ, ତାଙ୍କୁ ଚଞ୍ଚଳ ଫେରିବାକୁ ହେବ; କାରଣ ତିନିଟାବେଳେ ତାଙ୍କର ଗୋଟାଏ ଜାଗାକୁ ଯିବାର ଅଛି। ସେ ଜାଗାରୁ ସେ ଆଉ ଫେରିନାହାନ୍ତି।

''ହାଥରଲି ଖମାର ଘରଠୁ ବସ୍‌କୋମ୍ ହ୍ରଦର ଦୂରତା ମୋଟେ ମାଇଲ୍‌କର ପାଏ। ସେ ଗଲାବେଳେ ଦୁଇଜଣ ଲୋକ ତାଙ୍କୁ ଦେଖିଛନ୍ତି। ଜଣେ ହେଲା ଗୋଟିଏ ବୁଢ଼ୀ। ତା ନାଁ କିଛି କୁହାଯାଇନାହିଁ। ଆଉ ଜଣେ ହେଲା ଉଇଲିୟମ୍ କ୍ରାଉଡ଼ର୍। ସେ ମିଷ୍ଟର୍ ଟର୍‌ନର୍‌ଙ୍କ ପାଖେ ଚାକିରି

କରେ। ଦୁଇଜଣଯାକ ସାକ୍ଷୀ କହନ୍ତି ଯେ ମିଷ୍ଟର୍ ମାକାର୍‌ଥି ଗଲାବେଳେ ଏକୁଟିଆ ଯାଉଥିଲେ। ତା ଛଡ଼ା କ୍ରାଉଡ଼ର୍ କହେ ଯେ ସେ ମାକାର୍‌ଥିଙ୍କୁ ଦେଖିବାର କେତେ ମିନିଟ୍ ପରେ ତାଙ୍କ ପୁଅ ଜେମ୍‌ସ୍ ମାକାର୍‌ଥି ଗୋଟେ ବନ୍ଧୁକ ଧରି ସେଇ ବାଟେ ଯିବାର ସେ ଦେଖିଛି। ତାର ଦୃଢ଼ ବିଶ୍ୱାସ ଯେ ପୁଅ ବାପକୁ ଦେଖିପାରୁଥିଲା ଏବଂ ତାଙ୍କର ପଛେ ପଛେ ଚାଲିଥିଲା। ସେ ଏ ବିଷୟରେ ଆଉ କିଛି ଭାବି ନ ଥିଲା। ସେଦିନ ସନ୍ଧ୍ୟାରେ ସେ ଏ ଦୁର୍ଘଟଣା କଥା ଶୁଣିଲା।

''ମାକାର୍‌ଥି ବାପ ପୁଅ କ୍ରାଉଡ଼ର୍‌ର ଆଖି ଆଗରୁ ଚାଲିଯିବା ପରେ ମଧ୍ୟ ଅନ୍ୟ ଲୋକ ସେମାନଙ୍କୁ ଦେଖିଛନ୍ତି। ବସ୍‌କୋମ୍ବ ହ୍ରଦ ଚାରିପାଖେ ଘଞ୍ଚ ଗଛ ଲତା। ହ୍ରଦକୂଳକୁ ଲାଗି ଗହଳିଆ ଘାସ। ସେଦିନ ମୋରାନ୍ ବୋଲି ଚଉଦ ବର୍ଷର ଏକ ବାଳିକା ଏଇ ଜଙ୍ଗଲରେ ଫୁଲ ତୋଳୁଥିଲା। ସେ ହେଲା ବସ୍‌କୋମ୍ବ ଜମିଦାରିର ଜଗୁଆଳିର ଝିଅ। ସେ କହେ ଯେ ସେ ଫୁଲ ତୋଳୁଥିବାବେଳେ ହ୍ରଦ କଡ଼ ଜଙ୍ଗଲ ସୀମାରେ ବାପ ପୁଅ ଦୁଇଜଣଙ୍କୁ ଦେଖିଛି। ତାଙ୍କ କଥାବାର୍ତ୍ତା, ଢଙ୍ଗଢାଙ୍ଗରୁ ଜଣାଯାଉଥିଲା, ସେମାନେ ଖୁବ୍ ଜୋର୍ କଳି କରୁଛନ୍ତି। ବାପ ମାକାର୍‌ଥି ତାଙ୍କ ପୁଅକୁ ଖୁବ୍ ଟାଣ ଟାଣ କଥା କହିବାର ସେ ଶୁଣିଛି। ପୁଅ ମଧ୍ୟ ବାପକୁ ମାରିବା ଭଳି ଭଙ୍ଗୀରେ ହାତ ଉଠାଇବାର ସେ ଦେଖିଛି। ଏସବୁ ଦେଖି ତାକୁ ଭୟ ଲାଗିଲା। ତେଣୁ ସେ ସେଠାରୁ ଦୌଡ଼ି ପଳାଇ ଆସି ଘରେ ତା ମା' ଆଗରେ ସବୁକଥା କହିଲା। ତା ତୁଣ୍ଡରୁ କଥା ସରିଛି କି ନାହିଁ, ପୁଅ ମାକାର୍‌ଥି ଦୌଡ଼ି ଦୌଡ଼ି ଆସି ସେଠି ପହଞ୍ଚିଲେ। କହିଲେ ଯେ ଜଙ୍ଗଲ ଭିତରେ ତାଙ୍କ ବାପା ମରି ପଡ଼ିଥିବାର ଦେଖି ସେ ସାହାଯ୍ୟ ପାଇଁ ଧାଇଁଆସିଛନ୍ତି। ସେ ଖୁବ୍ ଉତ୍ତେଜିତ ଜଣାଯାଉଥିଲେ। ତାଙ୍କ ହାତରେ ବନ୍ଧୁକ କିମ୍ବା ମୁଣ୍ଡରେ ଟୋପି ନ ଥିଲା। ତାଙ୍କ ଡାହାଣ ହାତ ଏବଂ କୁରୁତାର ଡାହାଣ ପାଖରେ ଟଟକା ରକ୍ତଚିହ୍ନ ଥିଲା। ସେମାନେ ତାଙ୍କ ସାଥିରେ ଗଲେ। ହ୍ରଦକୂଳ ଘାସ ଉପରେ ମୃତଦେହ ପଡ଼ିଥିବାର ଦେଖିଲେ। କୌଣସି ହତିଆରରେ ମୁଣ୍ଡକୁ ଆଘାତ କରାଯାଇଛି। କ୍ଷତଗୁଡ଼ା ବନ୍ଧୁକ ବେଣ୍ଟର କୁନ୍ଦାଦ୍ୱାରା ହୋଇଥାଇପାରେ ବୋଲି ତାଙ୍କର ଅନୁମାନ। ମୃତଦେହର ଅଳ୍ପ ଦୂରରେ ବନ୍ଧୁକଟା ପଡ଼ିଥିଲା। ଏସବୁ ପରିସ୍ଥିତିରେ ତରୁଣ ମାକାର୍‌ଥିଙ୍କୁ ତୁରନ୍ତ

ଆରେଷ୍ଟ୍ କରାଗଲା। ମଙ୍ଗଳବାର ଦିନ ଅନୁସନ୍ଧାନକାରୀ ବିଚାରକ ଏହାକୁ ଇଚ୍ଛାକୃତ ହତ୍ୟା ବୋଲି କହିଲେ। ବୁଧବାର ଦିନ ତାଙ୍କୁ ରସ୍ ସହର ବିଚାରକଙ୍କ ନିକଟକୁ ନିଆଗଲା। ସେ କେଶ୍‌ଟା ଉପର ଅଦାଲତକୁ ପଠାଇଦେଇଛନ୍ତି। ଏଇ ହେଲା ମୋଟାମୋଟି ଘଟଣା।''

''ଏହାଠୁ ବଳି କଦର୍ଯ୍ୟ କେଶ୍ ମୁଁ କଳ୍ପନା କରିପାରୁନାହିଁ। ଏ କେଶ୍‌ରେ ଅପରାଧୀ ବିରୁଦ୍ଧରେ ପାରିପାର୍ଶିକ ସାକ୍ଷ୍ୟ ଖୁବ୍ ଦୃଢ଼।''

ଟିକିଏ ଚିନ୍ତା କରି ହୋମ୍ କହିଲେ, ''ପାରିପାର୍ଶ୍ୱିକ ପ୍ରମାଣ କିନ୍ତୁ ଭ୍ରମଶୂନ୍ୟ ନୁହେଁ। ଯାହାହେଉ ସ୍ୱୀକାର କରିବାକୁ ପଡ଼ିବ ଯେ କେଶ୍‌ଟା ପୁଅ ବିରୁଦ୍ଧରେ ଖୁବ୍ ଦୃଢ଼। ଏହା ମଧ୍ୟ ଖୁବ୍ ସମ୍ଭବ ଯେ ସେ ଅପରାଧୀ। ସେ ପାଖଆଖରେ ଆହୁରି କେତେକ ଲୋକ ଅଛନ୍ତି। ତାଙ୍କ ଭିତରୁ ମିଷ୍ଟର୍ ଟର୍‌ନର୍‌ଙ୍କ ଝିଅ ଜଣେ। ତାଙ୍କର ବିଶ୍ୱାସ ଯେ ତରୁଣ ମାକାରଥି ନିର୍ଦ୍ଦୋଷ। ତେଣୁ ଘଟଣାର ଅନୁସନ୍ଧାନ ପାଇଁ ସେ ସ୍କଟ୍‌ଲାଣ୍ଡ ୟାର୍ଡ଼ର ମିଷ୍ଟର୍ ଲେସ୍‌ଟ୍ରେଡ୍‌କୁ ଡକାଇଛନ୍ତି। ଲେସ୍‌ଟ୍ରେଡ୍ କିଛି ଠିକ୍ କରି ନ ପାରି ମତେ ଖବର ପଠାଇଛନ୍ତି। ତେଣୁ ଆମେ ଏବେ ଘଣ୍ଟାରେ ପଚାଶ ମାଇଲ ବେଗରେ ପଶ୍ଚିମକୁ ଚାଲିଛେ।''

''ଏ କ୍ଷେତ୍ରରେ ଘଟଣାଗୁଡ଼ା ଏତେ ସ୍ୱଷ୍ଟ ଯେ ତୁମେ କିଛି କରିପାରିବା ଆଶା ମୋର ନାହିଁ।''

ହସି ହସି ସେ କହିଲେ, ''ଯେଉଁ ଘଟଣା ଯେତେ ସ୍ୱଷ୍ଟ, ତାହା ସେତିକି ଭ୍ରମପୂର୍ଣ୍ଣ। ତା'ଛଡ଼ା ହୁଏତ କିଛି ତଥ୍ୟ ଲେସ୍‌ଟ୍ରେଡ୍‌ଙ୍କ ଆଖିରେ ପଡ଼ି ନଥାଇପାରେ, ଆଉ ଆମ ଆଖିରେ ପଡ଼ିପାରେ। ତୁମେ ତ ମୋତେ ଜାଣ। ମୁଁ କେତେକ ଉପାୟରେ ତାଙ୍କ ମତକୁ ଦୃଢ଼ କରିପାରିବି କିମ୍ବା ଖଣ୍ଡନ କରିପାରିବି। ସେହି ଉପାୟସବୁ ସେ ହୁଏତ ପ୍ରୟୋଗ କରି ନ ଥିବେ, କିମ୍ବା ଜାଣିପାରି ନ ଥିବେ। ଧର ଗୋଟିଏ ଉଦାହରଣ। ମୁଁ ବେଶ୍ ଜାଣିପାରୁଛି ଯେ ତୁମ ଶୋଇବା ଘରର ଝରକାଟା ଖଟର ଡାହାଣ ପାଖକୁ। ଲେସ୍‌ଟ୍ରେଡ୍ କିନ୍ତୁ ଏଇ ସ୍ୱଷ୍ଟ ଜିନିଷଟା ଲକ୍ଷ୍ୟ କରି ନ ଥିବେ।''

''କିନ୍ତୁ ତୁମେ ଏହା ଜାଣିଲ କିପରି ?''

''ବୁଝିଲ ଡାକ୍ତର ! ମୁଁ ତୁମକୁ ଭଲଭାବରେ ଜାଣେ। ସୈନ୍ୟ ବିଭାଗରେ ରହି ତୁମର ପରିଷ୍କାର-ପରିଚ୍ଛନ୍ନ ରୁଚି ମୋତେ ଜଣା। ତୁମେ ପ୍ରତିଦିନ

ସକାଳେ ଖିଅର ହୁଅ। ଆଜିକାଲି ସକାଳେ ତୁମେ ସୂର୍ଯ୍ୟାଲୋକରେ ଖିଅର ହେଉଛ। ମୁଁ ଦେଖୁଛି ତୁମେ ବାଁ ପାଖ ଅପେକ୍ଷା ଡାହାଣ ପାଖଟା ବେଶି ପରିଷ୍କାର ଭାବରେ ଖିଅର ହୋଇଛ। ସେଥିରୁ ମୁଁ ଜାଣିଲି ଯେ ତୁମର ବାଁ ପାଖ ଅପେକ୍ଷା ଡାହାଣ ପାଖେ ଅଧିକ ଆଲୁଅ ଥିଲା। ଏଇଟା ହେଲା ଗୋଟେ ଛୋଟ ଉଦାହରଣ। କୌଣସି ଜିନିଷ ସୂକ୍ଷ୍ମ ଭାବରେ ଲକ୍ଷ୍ୟ କରି ତଥ୍ୟ ବାହାର କରିବାରେ ଏଇ ହେଲା ମୋର ପଦ୍ଧତି। ତେଣୁ ଏ କେଶ୍ ଅନୁସନ୍ଧାନରେ ତାହା କାମରେ ଆସିପାରେ। ଅନୁସନ୍ଧାନବେଳେ ଗୋଟେ ଦୁଇଟା ଛୋଟ ଘଟଣା ଜଣାଯାଇଛି। ତାକୁ ଭଲଭାବରେ ବିଚାର କରିବା କଥା।''

''କି ଘଟଣା ?''

''ଦେଖାଯାଉଛି ଯେ ତାଙ୍କୁ ସାଙ୍ଗେ ସାଙ୍ଗେ ଆରେଷ୍ଟ କରାଯାଇନାହିଁ; ସେ ହାଥରଲି ଖମାରକୁ ଫେରିବା ପରେ ଆରେଷ୍ଟ୍ କରାଯାଇଛି। ପୋଲିସ୍ ଇନ୍‌ସ୍‌ପେକ୍ଟର ଯେତେବେଳେ ତାଙ୍କୁ କହିଲେ ଯେ ସେ ବନ୍ଦୀ, ସେତେବେଳେ ସେ ଉତ୍ତରଦେଲେ ଯେ ଏକଥା ଶୁଣି ସେ ମୋଟେ ବିସ୍ମିତ ନୁହଁନ୍ତି; ଆଉ ଏହା ତାଙ୍କର ପ୍ରାପ୍ୟ। ଅନୁସନ୍ଧାନକାରୀ ବିଚାରକଙ୍କ ମନରେ ଯଦି କିଛି ସନ୍ଦେହ ଥାଏ, ତେବେ ତାହା ଏହି କଥାଦ୍ୱାରା ଦୂର ହୋଇଯିବା ସ୍ୱାଭାବିକ।''

''ଏହା ତ ତାଙ୍କର ସ୍ୱୀକାରୋକ୍ତି।''

''ନା, କାରଣ ଏହା ପରେ ନିର୍ଦ୍ଦୋଷ ବୋଲି ଦୃଢ଼ ପ୍ରତିବାଦ କରିଛନ୍ତି।''

''ଏତେଗୁଡ଼ାଏ ଘଟଣା ଜାଣିବା ପରେ ତାଙ୍କୁ ନିର୍ଦ୍ଦୋଷ ବୋଲି କହିବା ପୂରା ସନ୍ଦେହଜନକ ମତ।''

''ବରଂ ଅନ୍ଧାର ଭିତରେ ସେଇ ହେଲା ଏକମାତ୍ର ଆଲୁଅରେଖା। ଯେ ଯେତେ ନିର୍ଦ୍ଦୋଷ ହେଲେ ମଧ ପାରିପାର୍ଶ୍ୱିକ ଅବସ୍ଥା ଯେ ପୂରା ତାଙ୍କ ବିରୁଦ୍ଧରେ, ଏକଥା ସେ ନିଶ୍ଚୟ ବୁଝିପାରିଥିବେ। ତାଙ୍କୁ ଆରେଷ୍ଟ କଲାବେଳେ ସେ ଯଦି ବିସ୍ମୟ ପ୍ରକାଶ କରିଥାନ୍ତେ କିମ୍ବା କ୍ରୁଦ୍ଧ ହୋଇଥାନ୍ତେ, ତା'ହେଲେ ମୋ ମନରେ ସନ୍ଦେହ ହୋଇଥାନ୍ତା; କାରଣ ଏଭଳି ପରିସ୍ଥିତିରେ ବିସ୍ମୟ ବା କ୍ରୋଧ ଏକାବେଳକେ ଅବାସ୍ତବ। ପରିସ୍ଥିତିକୁ ସରଳ ଭାବେ ଗ୍ରହଣ କରିନେବାଟା ତାଙ୍କର ନିର୍ଦ୍ଦୋଷତା କିମ୍ବା ଆତ୍ମବିଶ୍ୱାସ ଓ ଦୃଢ଼ତାର ପରିଚୟ। ଆରେଷ୍ଟ ହେବାଟା ତାଙ୍କର ପ୍ରାପ୍ୟ ବୋଲି ସେ ଯାହା କହିଲେ,

ସେଇଟା ମଧ୍ୟ ବାସ୍ତବ; କାରଣ ସେ ତାଙ୍କ ବାପାଙ୍କ ମୃତଦେହ ପାଖରେ ଠିଆହୋଇଥିଲେ ଏବଂ ପୂର୍ବରୁ ତାଙ୍କ ସାଥିରେ କଳି କରିଥିଲେ। ତାଙ୍କର ଆତ୍ମନିନ୍ଦା ଆଉ ଅନୁତାପରୁ ମୁଁ ଜାଣୁଛି, ସେ ଦୋଷୀ ନୁହଁନ୍ତି।''

''ଏଥିରୁ କମ୍ ପ୍ରମାଣ ଥାଇ ମଧ୍ୟ ଅନେକ ଲୋକ ଫାଶୀ ପାଇଛନ୍ତି।''

''ତା ସତ; କିନ୍ତୁ ସେମାନେ ଅନ୍ୟାୟରେ ଫାଶୀ ପାଇଥାଇପାରନ୍ତି।''

''ଘଟଣା ସମ୍ପର୍କରେ ଯୁବକର ନିଜର ବିବରଣୀ କ'ଣ ?''

''ସେ ବିବରଣୀ ଅବଶ୍ୟ ତାଙ୍କ ସପକ୍ଷରେ ଯାଉନାହିଁ। ତେବେ ଗୋଟାଏ ଦୁଇଟା କଥା ବିଚାରକୁ ଆସିପାରେ। ଏଇ ତାଙ୍କର ବିବରଣୀ ପଢ଼।''

ହତଭାଗ୍ୟ ଯୁବକ ଅନୁସନ୍ଧାନକାରୀ ବିଚାରକଙ୍କ ନିକଟରେ ଦେଇଥିବା ବିବରଣୀ ଖବରକାଗଜରୁ ପଢ଼ିଲି—

''ତା'ପରେ ମୃତଲୋକଙ୍କର ଏକମାତ୍ର ପୁଅ ଜେମ୍‌ସ୍ ମାକାର୍‌ଥିଙ୍କୁ ଡକରା ହେଲା। ସେ ନିମ୍ନଲିଖିତ ସାକ୍ଷ୍ୟ ଦେଲେ—

'ମୁଁ ତିନିଦିନ ହେଲା ଘରେ ନ ଥିଲି, ବ୍ରିଷ୍ଟଲ୍ ଯାଇଥିଲି; ତିନି ତାରିଖ ସୋମବାର ଦିନ ସକାଳେ ଘରକୁ ଫେରିଲି। ସେତେବେଳେ ମୋ ବାପା ଘରେ ନ ଥିଲେ। ଚାକରାଣୀ କହିଲା ଯେ ସେ ଗାଡ଼ିରେ ରସ୍ ସହରକୁ ଯାଇଛନ୍ତି। ଅଳ୍ପ ସମୟ ପରେ ମୁଁ ଗାଡ଼ି ଆସିବା ଶବ୍ଦ ଶୁଣିଲି। ଝରକାବାଟେ ଚାହିଁ ଦେଖିଲି, ସେ ଗାଡ଼ିରୁ ଓହ୍ଲାଇ ତରତର ହୋଇ ବାହାରକୁ ଚାଲିଗଲେ। ସେ କେଉଁଆଡ଼େ ଯାଉଛନ୍ତି, ମୁଁ ଜାଣି ନ ଥିଲି। ତା'ପରେ ମୁଁ ବନ୍ଧୁକଟା ଧରି ଠେକୁଆ ମାରିବା ପାଇଁ ବସ୍‌କୋମ୍ବ ହ୍ରଦଆଡ଼େ ଗଲି। ବାଟରେ ମୁଁ ଉଇଲିୟମ୍ କ୍ରାଉଡ଼ରକୁ ଦେଖିଲି। ଏ କଥା ସେ ତାଙ୍କ ସାକ୍ଷ୍ୟରେ କହିଛନ୍ତି; କିନ୍ତୁ ମୁଁ ମୋ ବାପାଙ୍କ ପିଛା ଧରିଛି ବୋଲି ଭାବିବା ତାଙ୍କର ଭୁଲ। ମୋ ବାପା ମୋ ଆଗେ ଆଗେ ଯାଉଛନ୍ତି ବୋଲି ମୋର ମୋଟେ ଧାରଣା ନ ଥିଲା। ହ୍ରଦଠୁ ପ୍ରାୟ ଶହେ ଗଜ ଦୂରରେ ଥିବାବେଳେ ମୁଁ 'କୁ' ବୋଲି ଗୋଟେ ଶବ୍ଦ ଶୁଣିଲି। ଏଇ ଶବ୍ଦ ବାପା ଆଉ ମୋ ଭିତରେ ଏକ ଠାର। ତା'ପରେ ମୁଁ ଖୁବ୍ ଶୀଘ୍ର ଚାଲିଯାଇ ହ୍ରଦକୂଳରେ ବାପା ଠିଆହୋଇଥିବା ଦେଖିଲି। ସେ ମୋତେ ଦେଖି ବିସ୍ମିତ ହୋଇଗଲାପରି ଜଣାଗଲା। ମୁଁ କାହିଁକି ସେଠାକୁ ଆସିଛି ବୋଲି ସେ ମୋତେ ଖୁବ୍

ଟାଣ ଭାଷାରେ ପଚାରିଲେ। ଆମ ଭିତରେ କଥାବାର୍ତ୍ତା ହେଉ ହେଉ ବଚସା ହୋଇଗଲା; ହାତ ଉଠାଉଠିଯାଏ ମଧ୍ୟ ଚାଲିଗଲା। କାରଣ ବାପା ଖୁବ୍ ଉଗ୍ର ସ୍ୱଭାବର ଲୋକ। ଯେତେବେଳେ ଦେଖିଲି ତାଙ୍କ ରାଗ ସୀମା ଟପିବାକୁ ବସିଲାଣି, ମୁଁ ତାଙ୍କୁ ଛାଡ଼ି ଚାଲିଆସିଲି। ମୁଁ ମୋଟେ ଦେଢ଼ ଶହ ଗଜ ଫେରିଛି କି ନାହିଁ, ଏକ ବିକଟ ଚିତ୍କାର ଶୁଣିପାରିଲି। ତେଣୁ ମୁଁ ପୁଣି ପଛକୁ ଦୌଡ଼ି ଫେରିଗଲି। ଦେଖିଲି, ବାପା ମଲାପରି ତଳେ ପଡ଼ିଛନ୍ତି। ତାଙ୍କ ମୁଣ୍ଡରେ ଭୀଷଣ ଆଘାତ। ମୁଁ ବନ୍ଧୁକଟା ତଳେ ପକାଇ ଦେଇ ତାଙ୍କୁ ଦୁଇ ହାତରେ ଟେକିଧରିଲି; କିନ୍ତୁ ସାଙ୍ଗେ ସାଙ୍ଗେ ତାଙ୍କ ପ୍ରାଣ ଚାଲିଗଲା। ମୁଁ କିଛି ସମୟ ତାଙ୍କ ପାଖରେ ଆଣ୍ଠୁ ମାଡ଼ି ବସିଲି। ତା'ପରେ ସାହାଯ୍ୟ ଆଶାରେ ମିଷ୍ଟର୍ ଟର୍ନରଙ୍କ ଜଗୁଆଳି ଘରଆଡ଼େ ଧାଇଁଲି; କାରଣ ସେଇଟା ହେଲା ସବୁଠୁ ପାଖ ଘର। ପୁଣି ଫେରିବା ପରେ ବାପାଙ୍କ ପାଖରେ କାହାକୁ ଦେଖିନାହିଁ। କିପରି ତାଙ୍କଠାରେ ଆଘାତ ହେଲା, ମୋର କିଛି ଧାରଣା ନାହିଁ। ତାଙ୍କର ପ୍ରକୃତି ଯୋଗୁଁ ସେ ଲୋକପ୍ରିୟ ନ ଥିଲେ; କିନ୍ତୁ ମୋ ଜାଣିବାରେ ତାଙ୍କର କେହି ଶତ୍ରୁ ନ ଥିଲେ। ମୁଁ ଆଉ କିଛି ଜଣେନା।'

ବିଚାରକ– ମରିବା ପୂର୍ବରୁ ଆପଣଙ୍କ ବାପା ଆପଣଙ୍କ ଆଗରେ କିଛି କହିଥିଲେ କି ?

ସାକ୍ଷୀ– ସେ ଖନେଇ ଖନେଇ କଣ କହିଲେ। ସେଥିରୁ ମୁଁ କେବଳ 'ରାଟ୍' ଶବ୍ଦର ସଙ୍କେତ ମାତ୍ର ପାଇପାରିଲି।

ବିଚାରକ– ଆପଣ ସେଥିରୁ କ'ଣ ବୁଝିଲେ ?

ସାକ୍ଷୀ– ସେଥିରୁ ମୁଁ କିଛି ବୁଝିପାରିଲି ନାହିଁ। ଭାବିଲି ସେ ପ୍ରଳାପ କରୁଛନ୍ତି।

ବିଚାରକ– କେଉଁ ବିଷୟରେ ଆପଣଙ୍କର ବାପାଙ୍କ ସଙ୍ଗେ କଳି ହେଲା ?

ସାକ୍ଷୀ– ସେ କଥା ମୁଁ ପ୍ରକାଶ କରିବାକୁ ଇଚ୍ଛା କରେନା।

ବିଚାରକ– ମୁଁ କିନ୍ତୁ ଆପଣଙ୍କୁ ବାଧ କରିବି।

ସାକ୍ଷୀ– ସେ କଥା କହିବା ମୋ ପକ୍ଷରେ ଅସମ୍ଭବ। ମୁଁ ପ୍ରତିଶ୍ରୁତି ଦେଉଛି ଯେ ଏ ଦୁର୍ଘଟଣା ସହିତ ତାର କିଛି ସମ୍ବନ୍ଧ ନାହିଁ।

ବିଚାରକ– ସେ କଥା ଅଦାଲତ ବିଚାର କରିବେ। ତେବେ ଏ କଥା ବୋଧହୁଏ ଆପଣଙ୍କୁ ବୁଝାଇବାକୁ ପଡ଼ିବ ନାହିଁ ଯେ ଭବିଷ୍ୟତରେ ଏହା ଆପଣଙ୍କ ବିରୁଦ୍ଧରେ ଯାଇପାରେ।

ସାକ୍ଷୀ– ତଥାପି ମଧ୍ୟ ମୁଁ ପ୍ରକାଶ କରି ପାରିବି ନାହିଁ।

ବିଚାରକ– ଏଇ 'କୁ' ଶବ୍ଦ ନିଶ୍ଚୟ ଆପଣ ଏବଂ ଆପଣଙ୍କ ବାପାଙ୍କ ମଧ୍ୟରେ ଏକ ସଂକେତ ?

ସାକ୍ଷୀ– ହଁ।

ବିଚାରକ– ତେବେ ସେ ଆପଣଙ୍କୁ ଦେଖିବା ପୂର୍ବରୁ, ଏପରିକି ଆପଣ ବ୍ରିଷ୍ଟଲରୁ ଫେରିଲେଣି କି ନା ଜାଣିବା ପୂର୍ବରୁ ଏ ସଂକେତ କଲେ କିପରି ?

ସାକ୍ଷୀ– (ଯଥେଷ୍ଟ ବିବ୍ରତ ହୋଇ) ମୁଁ ଜାଣେନା।

ଜଣେ ଜୁରୀ– ଆପଣ ଚିତ୍କାର ଶୁଣି ଆପଣଙ୍କ ବାପାଙ୍କ ପାଖକୁ ଗଲାପରେ ସେଠି ଆପଣଙ୍କ ମନରେ ସନ୍ଦେହ ହେଲା ଭଳି କିଛି ଦେଖିନାହାନ୍ତି ?

ସାକ୍ଷୀ– ସ୍ପଷ୍ଟଭାବରେ କିଛି ଦେଖିନାହିଁ।

ବିଚାରକ– ତା ଅର୍ଥ ?

ସାକ୍ଷୀ– ମୁଁ ବଡ଼ ବିବ୍ରତ ହୋଇପଡ଼ିଥିଲି। ବାପାଙ୍କ କଥା ଛଡ଼ା ଆଉ କିଛି ମୁଁ ଭାବିପାରିନଥିଲି। ତଥାପି ମୁଁ ଦୌଡ଼ିଗଲାବେଳେ ମୋ ବାଁ ପାଖରେ କିଛି ଗୋଟାଏ ପଡ଼ିଥିବାର ମୋତେ ଅସ୍ପଷ୍ଟ ଭାବେ ଜଣାଗଲା। ଜିନିଷଟା ମାଟିଆ ରଙ୍ଗର ପରି ବୋଧହେଲା। ଗୋଟାଏ କୋଟ୍ କିମ୍ବା ସେଇପରି କିଛି ହୋଇପାରେ। ମୁଁ ବାପାଙ୍କ ପାଖରୁ ଉଠିଲାବେଳକୁ ସେଟା ଆଉ ସେଠି ନ ଥିଲା।

"ଆପଣ ତେବେ ସାହାଯ୍ୟ ପାଇଁ ଯିବା ପୂର୍ବରୁ ଜିନିଷଟା ସେଠୁ ଚାଲିଯାଇଥିଲା ?"

"ହଁ।"

"ଜିନିଷଟା କ'ଣ ଆପଣ କହିପାରିବେ ନାହିଁ ?"

"ନା, ମୋତେ ଜଣାଗଲା ଯେମିତି କିଛି ଗୋଟେ ସେଠି ଥିଲା।"

"ମୃତଦେହଠାରୁ କେତେ ଦୂରରେ ?"

"ପ୍ରାୟ ଦଶ ବାର ଗଜ ହେବ।"

"ଜଙ୍ଗଲର ଧାରଟା ସେଠୁ କେତେ ଦୂର ?"

"ପ୍ରାୟ ସେତିକି ଦୂର ହେବ।"

"ତା ହେଲେ ଆପଣ ଜିନିଷଟା ପାଖରୁ ମୋଟେ ବାରଗଜ ଦୂର;ର ଥିବାବେଳେ ଜିନିଷଟା ସେଠୁ ଚାଲିଯାଇଛି ?"

"ହଁ, କିନ୍ତୁ ମୁଁ ସେ ପାଖକୁ ପିଠି କରିଥିଲି।"

ଏତିକିରେ ସାକ୍ଷୀର ବିବରଣୀ ଶେଷ ହୋଇଛି।

କାଗଜଟା ପଢ଼ିସାରି ମୁଁ କହିଲି, "ଅନୁସନ୍ଧାନକାରୀ ବିଚାରକଙ୍କ ମତ ବିଚରା ଯୁବକ ମାକାରଥିର ପୂରା ବିରୁଦ୍ଧରେ। ଯୁବକକୁ ଦେଖିବାପୂର୍ବରୁ ତାଙ୍କ ବାପା ତାଙ୍କୁ ସଙ୍କେତଦ୍ୱାରା ଡାକିବା, ବାପାଙ୍କ ସାଥିରେ ହୋଇଥିବା କଥାବାର୍ତ୍ତା ପ୍ରକାଶ ନ କରିବା ଏବଂ ତାଙ୍କ ବାପା ମଲାବେଳେ ଗୋଟାଏ ମାତ୍ର ଶବ୍ଦ କହିବା ବିଚାରକଙ୍କ ମତରେ ପୁଅର ପୂର୍ଣ୍ଣ ବିରୁଦ୍ଧରେ।"

ସାମାନ୍ୟ ହସି ହୋମ୍ କହିଲେ, "ବିଚାରକ ଏବଂ ତୁମେ ଦୁଇଜଣଯାକ କିନ୍ତୁ ଯୁବକ ସପକ୍ଷରେ ଥିବା ଦୃଢ଼ ଘଟଣା ଉପରେ ମୋଟେ ଦୃଷ୍ଟି ଦେଇପାରୁନାହଁ ? ତା'ର ଚିନ୍ତାଶକ୍ତି କେତେ କ୍ଷୀଣ ଆଉ କେତେ ତୀବ୍ର ଦେଖିପାରୁନାହଁ। ବାପାଙ୍କ ସାଥିରେ କଳି ଲାଗିବାର କିଛି ଗୋଟେ କାରଣ ସେ କହିଦେଇପାରିଥାନ୍ତା। ଏହା ନ କରିବା ତାର ଦୁର୍ବଳ ଚିନ୍ତାଶକ୍ତି; ଅଥଚ 'ରାଟ୍' ଶବ୍ଦ ଏବଂ ସେ ଜାଗାରୁ ଚାଲିଯିବା ପୋଷାକ କଥା ମନେକରି କହିବାଟା ତାର ତୀବ୍ର ଚିନ୍ତାଶକ୍ତିର ପରିଚୟ। ନା ନା, ମୁଁ ଯୁବକର ଉକ୍ତିକୁ ସତ ବୋଲି ଗ୍ରହଣ କରି ଏ କେଶ୍ ଅନୁସନ୍ଧାନ କରିବି; ଦେଖିବା ଆମେ କେଉଁଠି ପହଞ୍ଚୁଛେ। ବର୍ତ୍ତମାନ ପାଇଁ କେଶ୍ କଥା ଏଇଠି ଥାଉ। ଘଟଣାସ୍ଥଳରେ ପହଞ୍ଚିଲା ପରେ ଆଉ ଯାହା।"

ପ୍ରାୟ ଚାରିଟାବେଳକୁ ଆମେ ରସ୍‌ରେ ପହଞ୍ଚିଲୁ। ଛୋଟ ସହରଟିଏ। ପ୍ଲାଟ୍‌ଫର୍ମରେ ଲେସ୍‌ଟ୍ରେଡ୍ ଆମକୁ ଅପେକ୍ଷା କରିଥିଲେ। ତାଙ୍କ ସାଥିରେ ଆମେ ହରଫୋଡ୍ ଆର୍ମସ୍ ହୋଟେଲ୍‌କୁ ଗଲୁ। ସେଠି ଆମେ ରହିବା ପାଇଁ ଗୋଟାଏ ଘର ବନ୍ଦୋବସ୍ତ ହୋଇଥିଲା। ଚା' ପିଉ ପିଉ ଲେସ୍‌ଟ୍ରେଡ୍ କହିଲେ, "ମିଷ୍ଟର୍ ହୋମ୍, ମୁଁ ଆପଣଙ୍କ କଥା ଜାଣେ। ଘଟଣାସ୍ଥଳକୁ

ନ ଯିବାଯାଏ ଆପଣ ସନ୍ତୁଷ୍ଟ ହେବେନାହିଁ। ତେଣୁ ମୁଁ ଗୋଟେ ଗାଡ଼ି ବରାଦ କରିଦେଇଛି।''

''ଖୁବ୍ ଭଲ କରିଛ,'' ହୋମ୍ ଉତ୍ତର ଦେଲେ – ''କିନ୍ତୁ ବାରୋମିଟର ପ୍ରେସର୍ (ଚାପ) ଉପରେ ସବୁ ନିର୍ଭର କରୁଛି।''

କିଛି ବୁଝି ନ ପାରି ଲେସ୍‌ଟ୍ରେଡ୍ ଖାଲି ଚାହିଁରହିଲେ।

ହୋମ୍ କହିଲେ, ''କାଚକୁ ଚାହିଁ ଦେଖ। ଅଣତିରିଶ ଡିଗ୍ରୀ। ଆକାଶରେ ମେଘ-ପବନର ଚିହ୍ନ ନାହିଁ। ମୋ ପାଖେ ବି ଢେର୍ ସିଗାରେଟ୍ ଅଛି। ହୋଟେଲ୍‌ର ସୋଫା ବି ବେଶ୍ ଆରାମଦାୟକ ହେବ। ଆଜି ରାତିରେ ଗାଡ଼ି ଦର୍କାର ହେବ ବୋଲି ମୁଁ ଭାବୁନାହିଁ।''

ହୋ-ହୋ ହସିଉଠି ଲେସ୍‌ଟ୍ରେଡ୍ କହିଲେ, ''ଖବରକାଗଜରୁ ସବୁ ପଢ଼ି ତୁମେ ତା'ହେଲେ ତୁମର ସିଦ୍ଧାନ୍ତ କରିସାରିଛ। କେଶ୍‌ଟା ଅତି ସହଜ। ତା' ଭିତରକୁ ଯେତିକି ଯେତିକି ଯିବ, କେଶ୍‌ଟା ସେତିକି ସରଳ ହୋଇଯିବ। ତଥାପି ଜଣେ ଭଦ୍ରମହିଳାଙ୍କ ଅନୁରୋଧ ଏଡ଼ିଦେଇ ହେଉନାହିଁ। ସେ ତୁମ କଥା ଶୁଣିଛନ୍ତି, ଆଉ ତୁମ ମତ ଜାଣିବାକୁ ଚାହାନ୍ତି। ମୁଁ ଅବଶ୍ୟ ତାଙ୍କୁ ବାରମ୍ବାର କହିଛି ଯେ ତୁମେ ଆଉ କିଛି ଅଧିକ କରିପାରିବ ନାହିଁ। ଏଇ ତ ତାଙ୍କ ଗାଡ଼ି ଆସି ବାଟମୁହଁରେ।''

ତାଙ୍କ ତୁଣ୍ଡରୁ କଥା ସରିଛି କି ନାହିଁ, ଜଣେ ସୁନ୍ଦରୀ ତରୁଣୀ ଘର ଭିତରକୁ ପଶିଆସିଲେ। ମୁହଁରେ ଉଦ୍‌ବେଗର ଚିହ୍ନ। ଆମ ଆଡ଼କୁ ଚାହିଁ କହିଲେ, ''ମିଷ୍ଟର୍ ହୋମ୍, ମୁଁ ବଡ଼ ଆନନ୍ଦିତ ଯେ ଆପଣ ଆସିଛନ୍ତି। ମୁଁ ଏ କଥା ଆପଣଙ୍କୁ କହିବା ପାଇଁ ଆସିଛି। ମୁଁ ଜାଣେ, ଜେମ୍‌ସ୍ ଏ କାମ କରିନାହାନ୍ତି। ମୁଁ ଚାହେଁ, ଆପଣ ଏଇ ଧାରଣା ନେଇ କାମ ଆରମ୍ଭ କରନ୍ତୁ। ଏ ବିଷୟରେ ଆପଣ ମୋତେ ସନ୍ଦେହ କରନ୍ତୁ ନାହିଁ। ଆମେ ପିଲାଦିନରୁ ପରସ୍ପରକୁ ଜାଣୁ। ତାଙ୍କର ଦୋଷ-ଦୁର୍ବଳତା ମୋ ଅପେକ୍ଷା ଅନ୍ୟ କେହି ଅଧିକ ଜାଣେନା। ସେ ମାଛିକି ମ' କହିବା ଲୋକ ନୁହଁନ୍ତି। ତାଙ୍କ ବିରୁଦ୍ଧରେ ଏ ଅଭିଯୋଗ ନିହାତି ଅବାନ୍ତର।''

''ମୋର ଆଶା, ଆମେ ତାଙ୍କୁ ଏଥିରୁ ମୁକ୍ତ କରିପାରିବା। ଯାହା କିଛି କରିବା କଥା ମୁଁ କରିବି। ଆପଣ ମୋ ଉପରେ ଭରସା ରଖିପାରନ୍ତି କୁମାରୀ ଟରନର୍।'' – ହୋମ୍ କହିଲେ।

''ଆପଣ ତ ଖବରକାଗଜରୁ ସବୁ ବିବରଣୀ ଆଉ ପ୍ରମାଣ ପଢ଼ିଛନ୍ତି; ଆପଣ ନିଶ୍ଚୟ କିଛି ସିଦ୍ଧାନ୍ତ କରିଥିବେ। ସେ ପ୍ରମାଣରେ କିଛି ତ୍ରୁଟି ଆପଣ ଦେଖିପାରୁନାହାନ୍ତି ? ସେ ନିର୍ଦ୍ଦୋଷ ବୋଲି କ'ଣ ଆପଣ ଭାବୁନାହାନ୍ତି ?''

''ମୁଁ ଭାବୁଛି ସେ ନିର୍ଦ୍ଦୋଷ ହେବାଟା ଖୁବ୍ ସମ୍ଭବ।''

ଲେସ୍‌ଟ୍ରେଡ୍‌ଙ୍କ ଆଡ଼କୁ ହେୟ ଭାବରେ ଚାହିଁ କୁମାରୀ ଟର୍‌ନର୍ କହିଲେ – ''ଶୁଣିଲେ ତ ! ସେ ଅନ୍ତତଃ ମତେ ଆଶା ଦେଉଛନ୍ତି।''

ଏକରକମ ବ୍ୟଙ୍ଗ ଭାବରେ ଲେସ୍‌ଟ୍ରେଡ୍ କହିଲେ, ''କିନ୍ତୁ ମୋ ବନ୍ଧୁ ଖୁବ୍ ତରତରରେ ସିଦ୍ଧାନ୍ତ ଗ୍ରହଣ କରିନେଉଛନ୍ତି।''

''ସେ କିନ୍ତୁ ନିର୍ଭୁଲ। ମୁଁ ଜାଣେ ତାଙ୍କ ମତ ଠିକ୍। ଜେମ୍‌ସ୍ କଦାପି ଏ କାମ କରିନାହାନ୍ତି। ଆଉ ତାଙ୍କ ବାପାଙ୍କ ସାଥିରେ ତାଙ୍କ କଳିକଥା। ସେ ବିଚାରକଙ୍କ ଆଗରେ ଏ ବିଷୟ ନ କହିବାର କାରଣ, ମୁଁ ତା ସହିତ ସଂପୃକ୍ତ।''

''କିପରି ସଂପୃକ୍ତ ?'' – ହୋମ୍ ପଚାରିଲେ।

''କୌଣସି କଥା ଲୁଚାଇବାର ସମୟ ଏ ନୁହେଁ। ମୋ ବିଷୟରେ ଜେମ୍‌ସ୍ ଆଉ ତାଙ୍କ ବାପାଙ୍କ ଭିତରେ ଅନେକ ମତଭେଦ ଘଟିଛି। ମିଷ୍ଟର୍ ମାକାରଥିଙ୍କ ଏକାନ୍ତ ଇଚ୍ଛା ଆମ ଦୁଇଜଣଙ୍କର ବିବାହ ହେଉ। ଜେମ୍‌ସ୍ ଆଉ ମୁଁ ପରସ୍ପରକୁ ଭାଇ ଭଉଣୀ ପରି ଭଲପାଉ। ଜେମ୍‌ସ୍ ତରୁଣ। ସଂସାର ବିଷୟରେ ତାଙ୍କର ବିଶେଷ ଧାରଣା ନାହିଁ; ତେଣୁ ସେ ବିବାହ ଚାହୁଁ ନ ଥିଲେ। ସେଥିପାଇଁ ବାପପୁଅଙ୍କ ଭିତରେ କଳି ହେଉଥିଲା। ସେଦିନର କଳି ଏଇ କାରଣରୁ ବୋଲି ମୁଁ ନିଶ୍ଚିତ।''

''ଆଉ ଆପଣଙ୍କ ବାପା ? ସେ ଏ ବିବାହର ସମର୍ଥନ କରୁଥିଲେ ?''

''ନା, ସେ ଏହାର ବିରୁଦ୍ଧରେ। ମିଷ୍ଟର୍ ମାକାରଥିଙ୍କ ଛଡ଼ା ଆଉ କେହି ଏ ବିବାହ ଚାହୁଁ ନ ଥିଲେ।''

''ଏ ଖବର ପାଇଁ ଧନ୍ୟବାଦ କୁମାରୀ ଟର୍‌ନର୍ ! ମୁଁ କାଲି ଗଲେ ଆପଣଙ୍କ ବାପାଙ୍କ ସାଥିରେ ଦେଖା ହୋଇପାରିବ ?''

''ନା, ଡାକ୍ତର ବୋଧହୁଏ ମନାକରିବେ।''

''ଡାକ୍ତର ?''

''ହଁ, ଆପଣ ଶୁଣିନାହାନ୍ତି? କେତେ ବର୍ଷ ହେଲା ବାପାଙ୍କର ଦେହ ଭଲ ରହୁନାହିଁ। ସେଥିରେ ଏ ଘଟଣାରେ ସେ ପୂରା ଭାଙ୍ଗିପଡ଼ିଛନ୍ତି। ସେ ଏବେ ଶଯ୍ୟାଶାୟୀ। ଡାକ୍ତର କହନ୍ତି, ତାଙ୍କର ସ୍ନାୟୁସବୁ ଦୁର୍ବଳ ହୋଇଯାଇଛି। ମିଷ୍ଟର୍ ମାକାରଥି ଥିଲେ ଏକମାତ୍ର ଜୀବିତ ଲୋକ, ଯେ କି ବାପାଙ୍କୁ ବହୁ ପୂର୍ବରୁ ଭିକ୍ଟୋରିଆରେ ଥିଲାବେଳୁ ଜାଣନ୍ତି।''

''କଣ କହିଲେ, ଭିକ୍ଟୋରିଆ?''

''ହଁ, ଭିକ୍ଟୋରିଆର ଖଣି ଅଞ୍ଚଳରେ।''

''ବୁଝିଲି, ସୁନାଖଣି। ମିଷ୍ଟର୍ ଟର୍‌ନର୍ ନିଶ୍ଚୟ ସେଇଠି ତାଙ୍କର ଧନସମ୍ପତ୍ତି କରିଥିଲେ।''

''ହଁ।''

''ଧନ୍ୟବାଦ କୁମାରୀ ଟର୍‌ନର୍, ଆପଣ ମୋତେ ଯଥେଷ୍ଟ ସାହାଯ୍ୟ କରିଛନ୍ତି। ଆଉ କିଛି ଖବର ପାଇଲେ ମତେ କାଲି ଜଣାଇବେ। ଜେମ୍‌ସ୍‌କୁ ଦେଖିବାକୁ ଆପଣ ତ ନିଶ୍ଚୟ ଜେଲ୍‌କୁ ଯିବେ। ଯଦି ଯାଆନ୍ତି ତେବେ ତାଙ୍କୁ କହିବେ, ସେ ନିର୍ଦ୍ଦୋଷ ବୋଲି ମୁଁ ବିଶ୍ୱାସ କରେ।''

''ନିଶ୍ଚୟ କହିବି। ଏଥର ମୁଁ ଯାଏ। ବାପା ବଡ଼ ଅସୁସ୍ଥ। ମୁଁ ନ ଥିଲେ ସେ ବଡ଼ ବ୍ୟସ୍ତ ହେଉଥିବେ। ନମସ୍କାର, ଭଗବାନ ଆପଣଙ୍କ କାମରେ ସହାୟ ହୁଅନ୍ତୁ!''

ସେ ଯେମିତି ଆବେଗ ନେଇ ଆସିଥିଲେ, ସେମିତି ଆବେଗ ନେଇ ଘରୁ ବାହାରିଗଲେ। କିଛିକ୍ଷଣ ପରେ ରାସ୍ତାରେ ତାଙ୍କ ଗାଡ଼ିଶବ୍ଦ ଶୁଣାଗଲା। କିଛି ସମୟ ଚୁପ୍‌ଚାପ୍ କଟିଗଲା। ତା'ପରେ ଖୁବ୍ ଗମ୍ଭୀର ଭାବରେ ଲେସ୍‌ଟ୍ରେଡ୍ କହିଲେ, ''ତୁମ କଥା ଶୁଣି ମତେ ଲାଜ ଲାଗୁଛି ମିଷ୍ଟର୍ ହୋମ୍! ତୁମେ କାହିଁକି ଏ ଦୁରାଶା କରୁଛ?''

''ମୋର ଆଶା, ଜେମ୍‌ସ୍ ମାକାରଥିଙ୍କୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରିବାର ବାଟ ମୁଁ ପାଇପାରିବି। ଜେଲ୍‌ରେ ତାଙ୍କୁ ଦେଖାକରିବାକୁ ତୁମେ ଅନୁମତି ଆଣିଛ?''

''ହଁ, କିନ୍ତୁ କେବଳ ଆମ ଦୁଇଜଣଙ୍କ ପାଇଁ।''

''ତା'ହେଲେ ମୁଁ ବାହାରକୁ ଯିବି କି ନାହିଁ, ପୁଣି ଥରେ ବିଚାର କରିବି। ଏବେ କ'ଣ ହରଫୋର୍ଡ଼ ଯାଇ ତାଙ୍କୁ ଦେଖାକରିବାକୁ ଟ୍ରେନ୍

ମିଳିପାରିବ ?''

''ହଁ, ଟ୍ରେନ୍ ପାଇଁ ଢେର୍ ସମୟ ଅଛି।''

''ତେବେ ଚାଲ ଯିବା। ଉଆଟ୍ସନ୍, ତୁମେ ଏକୁଟିଆ ପଡ଼ିଯିବ। ତେବେ ମୁଁ ଖୁବ୍ ଶୀଘ୍ର ଫେରିଆସିବି। ଦୁଇଘଣ୍ଟା ପାଇଁ ମୁଁ ଯିବି।''

ମୁଁ ତାଙ୍କ ସାଥିରେ ଷ୍ଟେସନଯାଏ ଗଲି। ତା'ପରେ ସହରର ଗଳି ରାସ୍ତାରେ ଟିକିଏ ବୁଲାଚଲା କରି ହୋଟେଲକୁ ଫେରିଲି। ସୋଫା ଉପରେ ପଡ଼ିଯାଇ ଖଣ୍ଡେ ଉପନ୍ୟାସ ପଢ଼ିବାରେ ମନଦେଲି; କିନ୍ତୁ ଆମେ ଯେଉଁ ଗୂଢ଼ ରହସ୍ୟ ଭିତରେ ବୁଡ଼ିରହିଥିଲୁ, ତା ତୁଳନାରେ ଉପନ୍ୟାସର ବିଷୟବସ୍ତୁ ଅତି ନଗଣ୍ୟ। ଦେଖିଲି, ମନଟା ଉପନ୍ୟାସର କାଳ୍ପନିକ ବିଷୟରୁ ପ୍ରକୃତ ଘଟଣାଆଡ଼କୁ ଆପେ ଆପେ ଟାଣିହୋଇ ଯାଉଛି। ଶେଷରେ ବହିଟା ପକାଇଦେଇ ଏଇ ଘଟଣାଟା ବିଷୟ ଚିନ୍ତାକଲି। ଯଦି ଯୁବକ ମାକାର୍ଥିଙ୍କ କଥା ସତ ହୁଏ, ତେବେ ସେ ତାଙ୍କ ବାପାଙ୍କ ପାଖରୁ ଫେରିବା ଏବଂ ତାଙ୍କର ଚିତ୍କାର ଶୁଣିବା ଭିତରେ କ'ଣ ଘଟିଥାଇପାରେ ? ନିଶ୍ଚୟ କିଛି ଭୟଙ୍କର ଆଉ ମାରାତ୍ମକ। ମୋ ଡାକ୍ତରୀ ପାଠଦ୍ୱାରା ସେ ଆଘାତ-ଚିହ୍ନଗୁଡ଼ାକରୁ ମୁଁ କଣ କିଛି ଜାଣିପାରିବି ? ମୁଁ ସାପ୍ତାହିକ ଖବରକାଗଜଟା ମଗାଇଲି। ସେଥିରେ ଅନୁସନ୍ଧାନର ବିବରଣୀ ଟିକିନିଖି ଲେଖାଥିଲା। ଡାକ୍ତରଙ୍କ ଜମାନବନ୍ଦିରେ ଲେଖାଥିଲା, ମୁଣ୍ଡ ପଛପାଖ ବାଁ କଡ଼ର ହାଡ଼ ଭାଙ୍ଗିଯାଇଥିଲା। କୌଣସି ଥୁଣ୍ଟା ଅସ୍ତ୍ରଦ୍ୱାରା ଜୋର୍‌ରେ ଆଘାତ କରାଯାଇଛି। ମୁଁ ମୋ ନିଜ ମୁଣ୍ଡରେ ହାତ ମାରି ସେ ଜାଗାଟା ଲକ୍ଷ୍ୟକଲି। ଜାଣିଲି ଆଘାତଟା ନିଶ୍ଚୟ ପଛପାଖରୁ ହୋଇଛି। ଏ କଥାଟା ନିଶ୍ଚୟ ମୁଦାଲାର ସପକ୍ଷରେ ଯିବ; କାରଣ କଳି କଲାବେଳେ ସେ ତାଙ୍କ ବାପାଙ୍କ ସାମନାରେ ଠିଆ ହୋଇଥିଲେ। ତଥାପି ଏ ପ୍ରମାଣ ଯଥେଷ୍ଟ ନୁହେଁ। ମାଡ଼ ହେବା ପୂର୍ବରୁ ତାଙ୍କ ବାପା ହୁଏତ ବୁଲିପଡ଼ିଥିବେ। ତଥାପି ଏ କଥାଟା ହୋମ୍‌ଙ୍କୁ ଜଣାଇଦେବା କଥା। ତା'ପରେ ମରିବା ପୂର୍ବରୁ ସେ 'ରାଟ୍' ଶବ୍ଦ କହିଥିଲେ। ତାର ଅର୍ଥ କଣ ହୋଇପାରେ ? ଏହା ପ୍ରଳାପ ହୋଇପାରେନା। ହଠାତ୍ ଆଘାତ ପାଇ ମରିଗଲେ ସାଧାରଣତଃ କେହି ପ୍ରଳାପ କରେନା। ନା; ବରଂ ସେ କିପରି ଭାବରେ ମଲେ ସେ କଥା କହିବାକୁ ଚେଷ୍ଟା କରୁଥିଲେ। ସଙ୍କେତଟା କଣ ହୋଇପାରେ ? ମୁଁ ଜାଣିବାକୁ

ଖୁବ୍ ଚିନ୍ତାକଲି । ତା'ପରେ ଯୁବକ ମାକାରଥି ଦେଖିଥିବା ମାଟିଆ ପୋଷାକ – ଯଦି ତାହା ସତ ହୁଏ, ତେବେ ହତ୍ୟାକାରୀର କୌଣସି ପୋଷାକ ସେଠି ପଡ଼ିଯାଇଥିଲା; ବୋଧହୁଏ ତାର ଓଭରକୋଟ୍। ତେଣୁ ଯୁବକ ବାପାର ମୃତ ଦେହ ପାଖରେ ଆଣ୍ଠୁମାଡ଼ି ବସିଥିବାବେଳେ ସେ ପୁଣି ଆସି ତାହା ନେଇଯାଇଛି। ସମୁଦାୟ ଘଟଣାଟା ଖୁବ୍ ରହସ୍ୟପୂର୍ଣ୍ଣ, ଆଉ ଅସମ୍ଭବ। ତେଣୁ ଲେସ୍‌ଟ୍ରେଡ୍‌ଙ୍କ ମତ ମୋଟେ ବିସ୍ମୟକର ନୁହେଁ; କିନ୍ତୁ ସେରଲକ୍ ହୋମ୍‌ଙ୍କ ଉପରେ ମୋର ପ୍ରଗାଢ଼ ଆସ୍ଥା। ତେଣୁ ଯୁବକ ମାକାରଥିଙ୍କୁ ନିର୍ଦୋଷ ବୋଲି ପ୍ରମାଣ କରିବା ପାଇଁ ସେ କିଛି ନୂଆ ତଥ୍ୟ ବାହାର କରିପାରିବେ ବୋଲି ମୋର ଦୃଢ଼ ଆଶା ଥିଲା।

ହୋମ୍ ଏକା ଖୁବ୍ ଡେରିରେ ଫେରିଲେ। ଲେସ୍‌ଟ୍ରେଡ୍ ସହର ଭିତରେ ରହିଲେ। ସୋଫା ଉପରେ ବସିପଡ଼ି ହୋମ୍ କହିଲେ, ''ପାଗ ଉପରେ ସବୁ ନିର୍ଭର କରୁଛି। ଆମେ ସେ ଜାଗାକୁ ଯିବା ଆଗରୁ ବର୍ଷା ନ ହେଲେ ରକ୍ଷା। ଏଣେ ଏଡେବାଟ ଟ୍ରେନ୍‌ରେ ଆସି ବାଧା ଲାଗୁଛି। ତେଣୁ ବର୍ତ୍ତମାନ ସେଠିକି ଯିବା ମୋର ଇଚ୍ଛା ନୁହେଁ। ସେ ଯାହାହେଉ ମାକାରଥିଙ୍କ ସଙ୍ଗେ ମୋର ଦେଖାହେଲା।''

''ତାଙ୍କଠୁ କ'ଣ ବୁଝିଲ ?''

''କିଛି ନାହିଁ।''

''କୌଣସି ସୂତ୍ରର ସନ୍ଧାନ ?''

''ମୋଟେ ନୁହେଁ। ତାଙ୍କ କଥାରୁ ମୋର ତ ପ୍ରଥମେ ମନେହେଲା ଯେ ହତ୍ୟାକାରୀକୁ ସେ ଜାଣନ୍ତି, ଆଉ ଘୋଡ଼େଇବାକୁ ଚେଷ୍ଟା କରୁଛନ୍ତି। ପରେ କିନ୍ତୁ ବୁଝିଲି, ଅନ୍ୟମାନଙ୍କ ପରି ସେ ବି କିଛି ଜାଣନ୍ତିନାହିଁ। ସେ ଯଦିଓ ଦୃଢ଼ମନା, ତେବେ ବିଶେଷ ଚାଲାକ ନୁହଁନ୍ତି।''

''ମୁଁ ତ ତାଙ୍କର ରୁଚିକୁ ମୋଟେ ପସନ୍ଦ କରୁନାହିଁ। କୁମାରୀ ଟରନରଙ୍କ ପରି ସୁନ୍ଦରୀ ତରୁଣୀକୁ ବିବାହ କରିବାକୁ ସେ ଅରାଜି କାହିଁକି ?''

''ସେଇ ହେଲା ସବୁଠୁ ଦୁଃଖର କଥା। ଯୁବକଟି ଏଇ ତରୁଣୀର ପ୍ରେମରେ ପାଗଳ; କିନ୍ତୁ ଦୁଇବର୍ଷ ପୂର୍ବେ ତରୁଣୀ ଏଠୁ ଦୂରରେ ଏକ ବିଦ୍ୟାଳୟରେ ରହି ପଢୁଥିଲେ। ସେତିକିବେଳେ ଯୁବକ ମାକାରଥି ବ୍ରିଷ୍ଟଲ୍‌ର ଜଣେ ହୋଟେଲ୍ ପରିଚାରିକା ପାଲରେ ପଡ଼ିଗଲେ। ଶେଷରେ ରେଜିଷ୍ଟ୍ରି

କରି ତାକୁ ବିବାହ କରିବାକୁ ବାଧ୍ୟ ହେଲେ। ଏକଥା କେହି ଜାଣନ୍ତି ନାହିଁ। ତେଣୁ କୁମାରୀ ଟର୍‌ନର୍‌ଙ୍କ ସଙ୍ଗେ ତାଙ୍କ ବିବାହ ଅସମ୍ଭବ ବୋଲି ସେ ବୁଝିଲେ। ସେଥିପାଇଁ କେହି ତାଙ୍କୁ ନିନ୍ଦାକଲେ ସେ କିପରି ରାଗିଯାଉଥିବେ, କଳ୍ପନା କର। ତାଙ୍କ ବାପା ଯେତେବେଳେ କୁମାରୀ ଟର୍‌ନର୍‌ଙ୍କ ସାଥିରେ ବିବାହ ପ୍ରସ୍ତାବ ଆଣିବାକୁ ତାଙ୍କୁ କହିଲେ, ସେ ରାଗରେ ପାଗଳପରି ହୋଇ ତାଙ୍କ ଉପରକୁ ହାତ ବି ଉଠାଇଥିଲେ। ତାଙ୍କ ବାପା ଯେପରି ରାଗିଲୋକ, ସତକଥାଟା ଜାଣିଥିଲେ, ତାଙ୍କୁ ବାକି ରଖିନଥାନ୍ତେ; ଘରୁ ବାହାର କରିଦେଇଥାନ୍ତେ। ସେ ଯେଉଁ ତିନିଦିନ ଘରୁ ଯାଇଥିଲେ, ବ୍ରିଷ୍ଟଲ୍‌ରେ ତାଙ୍କର ଏଇ ପରିଚାରିକା ସ୍ତ୍ରୀ ପାଖେ ଥିଲେ। ଯାହା ହେଉ, ଏ ଦୁର୍ଘଟଣାର ଗୋଟାଏ ଭଲ ଫଳ ହୋଇଛି। ତାଙ୍କର ସେ ସ୍ତ୍ରୀ କାଗଜରୁ ସବୁ କଥା ଜାଣିଛି। ସେ ବିପଦରେ ପଡ଼ିଛନ୍ତି ଏବଂ ଫାଶୀ ପାଇପାରନ୍ତି ବୋଲି ସେ ଜାଣେ। ତେଣୁ ସେ ଗୋଟେ ଚିଠି ଲେଖି ତାଙ୍କୁ ଛାଡ଼ପତ୍ର ଦେଇଛି। ସେଥିରେ ଲେଖିଛି ଯେ ତାର ଆଉ ଜଣେ ସ୍ୱାମୀ ବରମୁଡ଼ା ବନ୍ଦରରେ ଅଛନ୍ତି। ତେଣୁ ତାଙ୍କ ଭିତରେ ବର୍ତ୍ତମାନ କିଛି ସମ୍ବନ୍ଧ ନାହିଁ। ଏ ଖବରଟା ପାଇ ବିଚରା ମାକାର୍‌ଥି କେତେଟା ସାନ୍ତ୍ୱନା ପାଇପାରିଛନ୍ତି।''

''କିନ୍ତୁ ସେ ଯଦି ନିର୍ଦ୍ଦୋଷ, ତେବେ ଏ କାମ କଲା କିଏ ?''

''ହଁ, କିଏ ? ଦୁଇଟା କଥା ଲକ୍ଷ୍ୟ କର। ଗୋଟାଏ ହେଲା ମୃତ ଲୋକ ହ୍ରଦକୂଳରେ କୌଣସି ଲୋକ ସହିତ ଦେଖାକରିବାର ଥିଲା। ସେ ଲୋକ କେବେ ତାଙ୍କ ପୁଅ ହୋଇନପାରେ; କାରଣ ସେ ଜାଣିଥିଲେ ଯେ ତାଙ୍କ ପୁଅ ଘରେ ନାହିଁ। କେତେବେଳେ ଫେରିବ, ତାଙ୍କୁ ଜଣା ବି ନ ଥିଲା। ଦ୍ୱିତୀୟ କଥା ହେଲା ମୃତ ଲୋକ 'କୁ' ବୋଲି ଶବ୍ଦ କରିଛି। ସେତେବେଳେ ପୁଅ ଫେରିବା କଥା ବି ତାଙ୍କୁ ଜଣାନାହିଁ। ଏଇ ଦୁଇଟା ହେଲା ଅତି ଗୁରୁତ୍ୱପୂର୍ଣ୍ଣ; ଆଉ ଏହାରି ଉପରେ କେଶ୍‌ଟା ନିର୍ଭର କରୁଛି। ଆଉ ସବୁ ଛୋଟ ଛୋଟ ବିଷୟ କାଲିକି ଥାଉ।''

ରାତିରେ ତ ବର୍ଷା ହୋଇନାହିଁ। ସକାଳେ ଆକାଶ ବେଶ୍ ସଫା ଥିଲା। ନଅଟାବେଳକୁ ଲେସ୍‌ଟ୍ରେଡ୍ ଗୋଟାଏ ଗାଡ଼ି ଧରି ପହଞ୍ଚିଲେ। ଆମେ ହାଥର୍‌ଲି ଖମାର ଆଉ ବସ୍‌କୋମ୍ ହ୍ରଦଆଡ଼କୁ ବାହାରିଲୁ। ବାଟରେ

ଯାଉ ଯାଉ ଲେସ୍ଟ୍ରେଡ୍ କହିଲେ, ''ଆଉ ଗୋଟେ ଗୁରୁତର ଖବର। ଶୁଣିଲି ମିଷ୍ଟର୍ ଟର୍ନର୍ ସାଙ୍ଘାତିକ ବେମାର ପଡ଼ିଛନ୍ତି; ବଞ୍ଚିବାର ଆଶା ନାହିଁ।''

''ବୋଧହୁଏ ସେ ଖୁବ୍ ବୁଢ଼ାଲୋକ ?'' ହୋମ୍ସ କହିଲେ।

''ବୟସ ପ୍ରାୟ ଷାଠିଏ ବର୍ଷ ହେବ; କିନ୍ତୁ ବିଦେଶରେ ରହି ତାଙ୍କର ସ୍ୱାସ୍ଥ୍ୟ ପୂରା ନଷ୍ଟ ହୋଇଯାଇଛି। କେତେଦିନ ହେଲା ସେ ବରାବର ଅସୁସ୍ଥ ଅଛନ୍ତି। ଏଇ ଦୁର୍ଘଟଣା ତାଙ୍କ ଉପରେ ଖୁବ୍ ପ୍ରଭାବ ପକାଇଛି। ସେ ମାକାର୍ଥିଙ୍କର ଜଣେ ପୁରୁଣା ବନ୍ଧୁ। ଖାଲି ସେତିକି ନୁହେଁ, ମାକାର୍ଥିଙ୍କୁ ସେ ଯଥେଷ୍ଟ ସାହାଯ୍ୟ ମଧ୍ୟ କରିଛନ୍ତି। ଖବର ପାଇଲି, ହାଥର୍ଲି ଖମାର ଘରଟା ସେ ତାଙ୍କୁ ବିନା ଭଡ଼ାରେ ଛାଡ଼ିଦେଇଛନ୍ତି।''

''ସତେ ? ବେଶ୍ କୌତୂହଳପ୍ରଦ କଥା।''

''ହଁ, ତା'ଛଡ଼ା ଆଉ ଅନେକ ପ୍ରକାରେ ସେ ତାଙ୍କୁ ସାହାଯ୍ୟ କରିଛନ୍ତି। ଏଠାକାର ଲୋକେ କହୁଛନ୍ତି, ମାକାର୍ଥିଙ୍କ ପ୍ରତି ତାଙ୍କର ଖୁବ୍ ଦୟା।''

''ସତେ ନା ? ଏଥିରୁ ତୁମେ କ'ଣ କିଛି ବୁଝିପାରୁନାହଁ ? ଏଇ ମାକାର୍ଥିଙ୍କର ନିଜର କିଛି ସମ୍ପତ୍ତିବାଡ଼ି ନାହିଁ। ସେ ମିଷ୍ଟର୍ ଟର୍ନର୍‌ଙ୍କ ଦୟାରେ ଚଳନ୍ତି। ଅପର ପକ୍ଷରେ ଟର୍ନର୍ ଖୁବ୍ ଧନିଲୋକ। ତାଙ୍କ ଝିଅ ତାଙ୍କ ସମ୍ପତ୍ତିର ଉତ୍ତରାଧିକାରିଣୀ। ସେଥିରେ ମାକାର୍ଥି ଟର୍ନର୍‌ଙ୍କ ଝିଅ ସାଥିରେ ତାଙ୍କ ପୁଅର ବାହାଘର କଥା ଉଠାଇବାଟା ବିଚିତ୍ର ନୁହେଁ କି ? ଆହୁରି ବେଶି ଆଶ୍ଚର୍ଯ୍ୟ କଥା ଯେ ଟର୍ନର୍ ଏ ପ୍ରସ୍ତାବର ପୂରା ବିରୁଦ୍ଧରେ। ଏକଥା ତାଙ୍କ ଝିଅ କହିଛନ୍ତି। ଏଥିରୁ ତୁମେ କଣ ଜାଣୁଛ ?''

''ଆମେ ସବୁକଥା ଜାଣି ସିଦ୍ଧାନ୍ତ କରିସାରିଛୁ। ଅନୁମାନ ଉପରେ ନିର୍ଭର କରି ଘଟଣା ଆୟତ୍ତ କରିବା ଆମ ପକ୍ଷରେ କଷ୍ଟକର।''

''ଠିକ୍ କହିଛ। ଘଟଣା ଆୟତ୍ତ କରିବା ତୁମ ପକ୍ଷରେ ଖୁବ୍ କଠିନ।''

ସାମାନ୍ୟ ଉତ୍ତେଜିତ ହୋଇ ଲେସ୍ଟ୍ରେଡ୍ କହିଲେ, ''ଯାହା ହେଉ, ଆମେ ଅନ୍ତତଃ ଗୋଟେ ଜିନିଷ ଜାଣିପାରିଛୁ, ଯାହା ଜାଣିବା ତୁମ ପକ୍ଷରେ କଠିନ।''

''ସେଇଟା କ'ଣ ?''

''ସେଇଟା ହେଲା, ସାନ ମାକାର୍‌ଥି ବଡ଼ ମାକାର୍‌ଥିଙ୍କ ହତ୍ୟାକାରୀ। ଏହା ବ୍ୟତୀତ ଅନ୍ୟ ଯେକୌଣସି ଅନୁମାନ ଚନ୍ଦ୍ରକିରଣ ପରି ଫିକା।''

''ଚନ୍ଦ୍ରକିରଣ କିନ୍ତୁ କୁହୁଡ଼ିଠାରୁ ଉଜ୍ଜ୍ୱଳ। ଯାହା ହେଉ, ବାଁ ପାଖରେ ଏଇ ଘରଟା ନିଶ୍ଚୟ ହାଥରଲି ଖମାର ?''

''ହଁ, ଏଇଟା।''

ବେଶ୍ ପ୍ରଶସ୍ତ ଦୁଇମହଲା କୋଠା। ଝରକାର ପରଦା ଟଣାଯାଇଥିଲା। ରୋଷେଇଘରେ ଧୂଆଁ ନାହିଁ। ଦୁର୍ଘଟଣାର ଛାପ ଏବେ ବି ଘରୁ ଯାଇନାହିଁ। ହୋମ୍‌ଙ୍କ ଅନୁରୋଧରେ ଚାକରାଣୀ ତା ମୁନିବଙ୍କ ଜୋତା ହଳକ ଆଣିଲା। ମଲାବେଳେ ସେ ଏଇ ଜୋତା ପିନ୍ଧିଥିଲେ। ତା'ଛଡ଼ା ଜେମ୍‌ସ୍‌ଙ୍କର ହଳେ ଜୋତା ମଧ ଆଣି ଦେଖାଇଲା। ଅବଶ୍ୟ ତାଙ୍କ ବାପାଙ୍କ ମୃତ୍ୟୁବେଳେ ସେ ଏ ଜୋତା ପିନ୍ଧି ନଥିଲେ। ହୋମ୍ ବିଭିନ୍ନ ସାତ ଆଠ ଜାଗାରୁ ଏଇ ଜୋତାର ମାପ ନେଇ ବସ୍‌କୋମ୍ବ୍ ହ୍ରଦଆଡ଼େ ଯିବାକୁ ବାହାରିଲେ।

ଏ ଘଟଣା ପଛରେ ଲାଗିଗଲାବେଳେ ହୋମ୍ ପୂରା ବଦଳିଯାଇଥା'ନ୍ତି। ବେକର୍ ଷ୍ଟ୍ରୀଟ୍‌ର ଚିନ୍ତାଶୀଳ ହୋମ୍‌ଙ୍କୁ ଯେ ଦେଖିଛି, ସେ ଏବେ ତାଙ୍କୁ ଦେଖିଲେ ଚିହ୍ନି ପାରନ୍ତାନାହିଁ। ତାଙ୍କ ମୁହଁ ଉତ୍ତେଜନାପୂର୍ଣ୍ଣ ଆଉ ଗମ୍ଭୀର। ଆଖିପତା ଦୁଇଟା କଠିନ କଳା ଗାରପରି। ତା' ତଳେ ଆଖି ଦୁଇଟା ଉଜ୍ଜ୍ୱଳ। ମୁହଁ ତଳକୁ, ବେକର ଶିରାସବୁ ବାଡ଼ିପରି ଠିଆ। ତାଙ୍କ ମନ ଏ ଘଟଣାରେ ଏତେ ବୁଡ଼ିଯାଇଥିଲା ଯେ, କୌଣସି ପ୍ରଶ୍ନ ବା କୌଣସି ମତାମତ ତାଙ୍କ କାନରେ ପଡୁ ନ ଥିଲା। ଖୁବ୍ ଚଞ୍ଚଳ ଓ ନିଃଶବ୍ଦରେ ସେ ବାଟେ ବାଟେ ଚାଲିଥାନ୍ତି। ଜାଗାଟା ସନ୍ତସନ୍ତିଆ ଆଉ କାଦୁଆ। ରାସ୍ତାରେ ଏବଂ ରାସ୍ତାକଡ଼ ଘାସ ଉପରେ ଅନେକ ପାଦଚିହ୍ନ ଥାଏ। ହୋମ୍ ବେଳେବେଳେ ଖୁବ୍ ଚଞ୍ଚଳ ଚାଲିଥାନ୍ତି, ପୁଣି ବେଳେବେଳେ ପୂରା ଠିଆହୋଇ ରହୁଥାନ୍ତି। ଥରେ ସେ ରାସ୍ତା ଛାଡ଼ି ପଡ଼ିଆ ଭିତରକୁ ଚାଲିଗଲେ। ଲେସ୍‌ଟ୍ରେଡ୍ ଆଉ ମୁଁ ତାଙ୍କ ପଛେ ପଛେ ଯାଉଥାଉ। ଲେସ୍‌ଟ୍ରେଡ୍ ବିଲ୍‌କୁଲ ଆଗ୍ରହଶୂନ୍ୟ। ମୁଁ କିନ୍ତୁ ଖୁବ୍ ଆଗ୍ରହର ସହ ସବୁ ଲକ୍ଷ୍ୟ କରୁଥାଏ; କାରଣ ମୋର ଦୃଢ଼ବିଶ୍ୱାସ ତାଙ୍କର ପ୍ରତ୍ୟେକ କାମର ନିଶ୍ଚୟ କୌଣସି ନିର୍ଦ୍ଦିଷ୍ଟ ଫଳ ଅଛି।

ବସ୍‌କୋମ୍ବ ହ୍ରଦ ପ୍ରାୟ ପଚାଶ ଗଜ ଚଉଡ଼ା। ହାଥରଲି ଖମାର ଆଉ ମିଷ୍ଟର୍ ଟର୍‌ନର୍‌ଙ୍କ ଘରୋଇ ପାର୍କ ସୀମାରେ ହ୍ରଦଟି ଅବସ୍ଥିତ। ଏହାର ଅନ୍ୟ ପାଖରେ ଜଙ୍ଗଲ। ଜଙ୍ଗଲ ସେପଟେ ଧନୀ ଜମିମାଲିକମାନଙ୍କର ଘର। ହ୍ରଦର ଯେଉଁ ପାଖରେ ହାଥରଲି ଖମାର, ସେପାଖେ ଜଙ୍ଗଲ ଖୁବ୍ ଘଞ୍ଚ। ହ୍ରଦକୂଳ ଆଉ ଜଙ୍ଗଲ ସୀମା ମଝିରେ ପ୍ରାୟ କୋଡ଼ିଏ ଗଜ ଚଉଡ଼ାର ଘାସ ପଡ଼ିଆ। ଯେଉଁ ଜାଗାରେ ମୃତଦେହଟା ପଡ଼ିଥିଲା, ଲେସ୍‌ଟ୍ରେଡ୍ ଆମକୁ ସେ ଜାଗାଟା ଦେଖାଇଦେଲେ। ଜାଗାଟା ଖୁବ୍ ସନ୍ତସନ୍ତିଆ। ଆଘାତ ପାଇ ଭୂଇଁରେ ପଡ଼ିଯିବାଦ୍ୱାରା ଯେଉଁ ଚିହ୍ନ ହୋଇଥିଲା, ତାହା ପରିଷ୍କାର ଦେଖାଯାଉଥାଏ। ହୋମ୍‌ଙ୍କ ମୁହଁରୁ ଜାଣିପାରିଲି, ଏଇ ଘାସ ପଡ଼ିଆରୁ ସେ ଆହୁରି ଅନେକ କିଛି ତଥ୍ୟ ପାଇପାରିବେ। କୁକୁର କୌଣସି ଗନ୍ଧ ପାଇଲେ ଯେପରି ଧାଇଁବୁଲେ, ସେ ସେହିପରି ଚାରିଆଡ଼େ ଧାଇଁବୁଲୁଥାନ୍ତି। ତା'ପରେ ଲେସ୍‌ଟ୍ରେଡ୍‌ଙ୍କ ଆଡ଼କୁ ଚାହିଁ ସେ ପଚାରିଲେ, ''ତୁମେ ସେ ହ୍ରଦ ଭିତରକୁ ଯାଇଥିଲ କାହିଁକି ?''

''ମୁଁ ତା ଭିତରେ ଖୋଜୁଥିଲି, କାଳେ କିଛି ହତିଆର ମିଳିପାରେ; କିନ୍ତୁ ତୁମେ ଏ କଥା ଜାଣିଲ କିପରି ?''

''ଛାଡ଼, ମୋର ବର୍ତ୍ତମାନ ସମୟ ନାହିଁ। ତୁମ ବାଁ ପାଦର ଚିହ୍ନ ସେଠି ପଡ଼ିଛି। ସେଟା ଟିକିଏ ଭିତର କଡ଼କୁ ବୁଲିପଡ଼ିଛି। ଗୋଟେ ଚୁଚୁନ୍ଦ୍ରା ମଧ ଏହା ଜାଣିପାରିବ। ମୁଁ ଯଦି ଆଗରୁ ଆସିଥାନ୍ତି, କାମଟା କେଡ଼େ ସହଜ ହୋଇଥାନ୍ତା। ମଇଁଷିପଲପରି ସେମାନେ ଆସି ଜାଗାଟାକୁ ଦଳିଦେଇଛନ୍ତି। ଏଇ ଜାଗାକୁ ସେ ଜଗୁଆଳି ସହ ଅନ୍ୟ ଲୋକସବୁ ଆସିଥିଲେ। ମୃତଦେହ ଚାରିପାଖେ ଯେଉଁ ପାଦଚିହ୍ନ ଥିଲା, ସେମାନେ ତାକୁ ପ୍ରାୟ ଆଠ ଫୁଟ ଦୂରଯାଏ ଦଳିଦେଇଛନ୍ତି; କିନ୍ତୁ ଏଇ ଦେଖ, ଏଇଠି ଏକା ପାଦର ତିନିଧାଡ଼ି ଚିହ୍ନ।'' ସେ ପକେଟରୁ ଲେନ୍‌ସ ବାହାର କରି ଭୂଇଁ ଉପରେ ଆଣ୍ଠେଇପଡ଼ି ଦେଖିବାକୁ ଲାଗିଲେ। ତା ସାଥିରେ ମନକୁ ମନ କହିଚାଲିଥାନ୍ତି, ''ଏ ହେଲା ଯୁବକ ମାକାରଥିଙ୍କ ପାଦଚିହ୍ନ। ସେ ଦୁଇଥର ଚାଲିଛନ୍ତି, ଆଉ ଥରେ ଜୋର୍‌ରେ ଦୌଡ଼ିଛନ୍ତି। ତେଣୁ ଦୌଡ଼ିବାବେଳେ ପଞ୍ଝାର ଚିହ୍ନ ଖୁବ୍ ସ୍ପଷ୍ଟ; କିନ୍ତୁ ଗୋଇଠିର ଚିହ୍ନ ପ୍ରାୟ ଦେଖାଯାଉନାହିଁ। ଏଥିରୁ ତାଙ୍କ କଥା ସତ ବୋଲି ଜଣାଯାଉଛି। ତାଙ୍କ

ବାପାଙ୍କୁ ତଳେ ପଡ଼ିଥିବାର ଦେଖି ସେ ଦୌଡ଼ିଆସିଛନ୍ତି। ତା'ପରେ ଏ ହେଲା ତାଙ୍କ ବାପାଙ୍କ ପାଦଚିହ୍ନ। ଏଇଠି ସେ ଏପଟ ସେପଟ ହେଉଥିଲେ। ଏଟା ତେବେ କି ଚିହ୍ନ? ହଁ, ଏଟା ହେଲା ବନ୍ଧୁକ କୁନ୍ଦାର ଚିହ୍ନ। ବାପାଙ୍କ ସାଙ୍ଗେ କଥା ହେଲାବେଳେ ସେ ଏଇଠି ଠିଆହୋଇଥିଲେ। ଆଉ ଏ ଚିହ୍ନଟା କ'ଣ? ବାଃ, ବାଃ, ଏଇ ଦେଖ ଏଠି କ'ଣ? ଛପି ଛପି ପାଦ ପକାଇବାର ଚିହ୍ନ। ଜୋତାଗୁଡ଼ା ପୁଣି ସାଧାରଣ ଜୋତା ନୁହେଁ। ଆସିବା ଚିହ୍ନ ପଡ଼ିଛି, ଯିବା ଚିହ୍ନ ପଡ଼ିଛି, ପୁଣି ଆସିବା ଚିହ୍ନ। ଅବଶ୍ୟ ଦ୍ୱିତୀୟ ଥରର ଚିହ୍ନଟା ସେଇ କୋଟଟା ନେବାପାଇଁ ଆସିବାବେଳର। ଏବେ ଦେଖିବା କଥା, ଏ ଚିହ୍ନର ଆରମ୍ଭ କେଉଁଠାରୁ।'' ସେ ଏପାଖ ସେପାଖ ଧାଇଁବୁଲିଲେ। କେତେବେଳେ ପାଦଚିହ୍ନଟା ମିଳୁଥାଏ, ପୁଣି କେତେବେଳେ ହଜିଯାଉଥାଏ। ଶେଷରେ ଆମେ ଆସି ଜଙ୍ଗଲଧାରରେ ପହଞ୍ଚିଲୁ। ସେଠି ଗୋଟେ ବଡ଼ ବିଚଗଛ ଥିଲା। ଆମେ ସେ ଗଛଛାଇରେ ଠିଆହେଲୁ। ହୋମ୍ ଗଛ ଆରପଟକୁ ଚାଲିଗଲେ। ତା'ପରେ ଭୂଇଁ ଉପରେ ପୁଣି ଆଣ୍ଠେଇପଡ଼ି କ'ଣ ଦେଖିଲେ। ଅନେକ ବେଳଯାଏ ସେ ପତ୍ର ଆଉ ଶୁଖିଲା କାଠିଗୁଡ଼ା ଆଡ଼େଇ ଏପଟ ସେପଟ କଲେ। ଗୋଟେ ଲଫାପା ଭିତରେ କ'ଣ ପୂରାଇଲେ। ମୁଁ ଭାବିଲି, ସେଗୁଡ଼ା ଧୂଳି। ତାଙ୍କ ଲେନ୍ସରେ ସେ ଭୂଇଁ ଏବଂ ଗଛର ବକଳ ମଧ୍ୟ ପରୀକ୍ଷା କରି ଦେଖିଲେ। ପାଖ ଶିଉଳି ଉପରେ ଗୋଟେ ମୁନିଆ ପଥର ପଡ଼ିଥିଲା। ଏଟାକୁ ମଧ୍ୟ ସେ ପରୀକ୍ଷା କରି ପାଖରେ ରଖିଲେ। ତା'ପରେ ଜଙ୍ଗଲ ଭିତରେ ଗୋଟେ ଚଲାବାଟରେ ସେ ଚାଲିଲେ। ଶେଷରେ ସେ ଆସି ରାସ୍ତା ଉପରେ ପହଞ୍ଚିଲେ। ଏଠୁ ଆଉ କିଛି ଚିହ୍ନ ନ ଥିଲା।

ତାଙ୍କର ସ୍ୱାଭାବିକ ଅବସ୍ଥାକୁ ଫେରିଆସି ହୋମ୍ କହିଲେ, ''କେଶଟା ବେଶ୍ କୌତୂହଳପ୍ରଦ। ଡାହାଣ ପାଖର ସେଇ ମାଟିଆ ଘରଟା ବୋଧହୁଏ ଜଗୁଆଳିର ଘର। ମୁଁ ଟିକିଏ ସେଠିକି ଯାଉଛି। ମୋରାନ୍ ସାଥିରେ ପଦେଅଧେ କଥାବାର୍ତ୍ତା କରି ଆସିବି। ତା' ପରେ ଆମେ ଫେରିବା। ତୁମେ ଗାଡ଼ି ପାଖକୁ ଚାଲ। ମୁଁ ଶୀଘ୍ର ଫେରିବି।''

ପ୍ରାୟ ଦଶମିନିଟ୍ ପରେ ଆମେ ରସ୍ ସହରକୁ ଫେରିଲୁ। ହୋମ୍ ସେଯାଏ ଜଙ୍ଗଲରୁ ଆଣିଥିବା ସେ ପଥରଟା ଧରିଥାନ୍ତି। ଲେସ୍ଟ୍ରେଡ୍‌କୁ

ଚାହିଁ ସେ କହିଲେ, ''ବୁଝିଲ ଲେସ୍‌ଟ୍ରେଡ୍‌, ଏଇ ପଥରଦ୍ୱାରା ହତ୍ୟା କରାଯାଇଛି।''

''କାହିଁ, କିଛି ଚିହ୍ନ ତ ମୁଁ ଦେଖୁନାହିଁ।''

''ଏଥିରେ କିଛି ଚିହ୍ନ ନାହିଁ।''

''ତାହେଲେ ତୁମେ ଜାଣିଲ କିପରି ?''

''ପଥରଟା ତଳେ ସବୁଜ ଘାସ ଥିଲା; ତେଣୁ ପଥରଟା ଅଳ୍ପ ଦିନ ହେଲା ସେଠି ରଖାଯାଇଛି; କିନ୍ତୁ କେଉଁଠୁ ପଥରଟା ଆସିଛି, ତାର କିଛି ଚିହ୍ନ ନାହିଁ। ଆଘାତ ସହିତ ଏ ପଥରଟାର ସାମଞ୍ଜସ୍ୟ ଅଛି। ଯା ଛଡ଼ା ଅନ୍ୟ କୌଣସି ହତିଆରର ଚିହ୍ନ ନାହିଁ।''

''ତା ହେଲେ ହତ୍ୟାକାରୀ ?''

''ଜଣେ ଡେଙ୍ଗାଲୋକ। ସେ ପୁଣି ବାଉଁଆ। ଡାହାଣ ଗୋଡ଼ ଲେଙ୍ଗଡ଼ା। ମୋଟା ତଳି ଥିବା ଜୋତା ପିନ୍ଧେ। ଗୋଟେ ଧୂସର ରଙ୍ଗର କୋଟ୍‌ ପିନ୍ଧିଥିଲା। ସେ ଭାରତୀୟ ସିଗାରେଟ୍‌ ବ୍ୟବହାର କରେ; ପୁଣି ଗୋଟେ ସିଗାରେଟ୍‌ ପାଇପ୍‌ ବ୍ୟବହାର କରେ। ତା ପକେଟ୍‌ରେ ଗୋଟେ ଥୁଣ୍ଡା ଛୁରୀ ଥିଲା। ଏଇପରି ଆହୁରି କେତେ ସଂକେତ ଅଛି; କିନ୍ତୁ ଏଇତକ ଆମକୁ ଯଥେଷ୍ଟ ସାହାଯ୍ୟ କରିବ।''

ହସି ହସି ଲେସ୍‌ଟ୍ରେଡ୍‌ କହିଲେ, ''ତଥାପି ମୋର ସନ୍ଦେହ। ଅନୁମାନଟା ଖୁବ୍‌ ସୁନ୍ଦର; କିନ୍ତୁ ଆମକୁ ଏକ ଇଂରେଜ ବିଚାରାଳୟର ମୁକାବିଲା କରିବାକୁ ହେବ।''

ଧୀର ଭାବରେ ହୋମ୍‌ ଉତ୍ତର ଦେଲେ, ''ତୁମର ସାଧାରଣ ଜ୍ଞାନ ନାହିଁ। ତୁମେ ତୁମ ବାଟରେ ଯାଅ, ଆଉ ମୁଁ ମୋ ବାଟରେ ଯାଉଛି। ଆଜି ଉପରବେଳା ମୋତେ କାମରେ ବ୍ୟସ୍ତ ରହିବାକୁ ପଡ଼ିବ। ବୋଧହୁଏ ଆଜି ସନ୍ଧ୍ୟା ଟ୍ରେନ୍‌ରେ ମୁଁ ଲଣ୍ଡନ ଫେରିଯିବି।''

''ଆଉ ଏ କେଶ୍‌ଟା ଏମିତି ଅଧାରେ ରଖିଯିବ ?''

''ନା, ଶେଷ କରି।''

''କିନ୍ତୁ ଏ ରହସ୍ୟ ?''

''ସମାଧାନ ହୋଇସାରିଛି।''

''ତା'ହେଲେ ଅପରାଧୀ କିଏ ?''

''ମୁଁ ଯେଉଁ ଲୋକର ବର୍ଣ୍ଣନା କରିଗଲି।''

''କିନ୍ତୁ ସେ କିଏ ?''

''ସେପରି ଜଣେ ଲୋକକୁ ଖୋଜି ବାହାର କରିବା କଠିନ ହେବନାହିଁ; କାରଣ ଏ ଅଞ୍ଚଳରେ ବେଶି ଲୋକବସତି ନାହିଁ।''

ତାଚ୍ଛଲ୍ୟ ପ୍ରକାଶ କରି ଲେସ୍‌ଟ୍ରେଡ୍ କହିଲେ, ''ମୁଁ ହେଲି କାମର ଲୋକ। ଜଣେ ବାଉଁଆ ଛୋଟା ଲୋକକୁ ଖୋଜିବାକୁ ମୁଁ ଯଦି ରାଜ୍ୟସାରା ବୁଲେ, ତେବେ ସ୍କଟ୍‌ଲାଣ୍ଡ ୟାର୍ଡ଼ରେ ସମସ୍ତେ ମୋତେ ହସରେ ଉଡ଼ାଇଦେବେ।''

''ଠିକ୍ ଅଛି। ମୁଁ ତୁମକୁ ଗୋଟେ ସୁଯୋଗ ଦେଇଥିଲି। ଏଇ ତ ତୁମ ବସାଘର। ନମସ୍କାର। ଯିବା ଆଗରୁ ମୁଁ ତୁମକୁ ଫୋନ୍ କରିବି।''

ଲେସ୍‌ଟ୍ରେଡ୍‌ଙ୍କୁ ଛାଡ଼ି ଆମେ ଆମ ହୋଟେଲ୍‌କୁ ଫେରିଲୁ। ଖିଆପିଆ ସରିଲା। ହୋମ୍ ଖୁବ୍ ଚିନ୍ତିତ ଦେଖାଯାଉଥାନ୍ତି। କିଛି ସମୟ ସେ ଚୁପ୍‌ଚାପ୍ ବସିରହିଲେ। ଜଣାଯାଉଥାଏ, ସେ ଯେମିତି କିଛି ଗୋଟେ ଅଡୁଆରେ ପଡ଼ିଯାଇଛନ୍ତି। ଟିକିଏ ପରେ କହିଲେ, ''ଦେଖ ଉଆଟ୍‌ସନ୍ ! ଏଇ ଚଉକିରେ ବସ। ମୁଁ ତୁମକୁ ସବୁ କଥା କହୁଛି। କ'ଣ କରାଯିବ ମୁଁ ଠିକ୍ କରିପାରୁନାହିଁ; ତେଣୁ ତୁମର ଉପଦେଶ ମୋର ଦର୍କାର। ଖଣ୍ଡେ ସିଗାରେଟ୍ ଦିଅ। ଏଥର ମୁଁ ତୁମକୁ ସବୁ ବୁଝାଇଦେଉଛି।''

''ହଉ, କହ।''

''ଏଇ କେଶ୍ ବିଷୟ ବିଚାର କଲାବେଳେ ଯୁବକ ମାକାର୍‌ଥିଙ୍କ ବିବରଣୀର ଦୁଇଟା ବିଷୟ ଆମ ମନରେ ରେଖାପାତ କରିଥିଲା। ଅବଶ୍ୟ ମୁଁ ତାଙ୍କ ସପକ୍ଷରେ; ଆଉ ତୁମେ ବିପକ୍ଷରେ ମତ ଦେଇଥିଲୁ। ଗୋଟେ କଥା ହେଲା, ତାଙ୍କ ବାପା ତାଙ୍କୁ ଦେଖିବା ଆଗରୁ 'କୁ' ବୋଲି ଶବ୍ଦ କରିଥିଲେ। ଆଉ ଗୋଟେ ହେଲା, ମଲାପୂର୍ବରୁ ସେ 'ରାଟ୍' ଶବ୍ଦ କହିଥିଲେ। ସେ ଅବଶ୍ୟ ଆଉ କିଛି କହିବାକୁ ଚେଷ୍ଟା କରିଥିଲେ; କିନ୍ତୁ ତାଙ୍କ ପୁଅ କେବଳ 'ରାଟ୍' ଶବ୍ଦଟା ଶୁଣିପାରିଛନ୍ତି। ଏଇ ଦୁଇଟା କଥାରୁ ପ୍ରଥମେ ଆମର ଅନୁସନ୍ଧାନ ଆରମ୍ଭ କରିବା। ଆମକୁ ଧରିନେବାକୁ ହେବ ଯେ ଯୁବକ ଯାହା କହିଛନ୍ତି, ତାହା ପୂରାପୂରି ସତ।''

''ତାହେଲେ ଏଇ 'କୁ' ଶବ୍ଦର ମାନେ କ'ଣ ?''

''ଏଟା ନିଶ୍ଚିତ ଯେ, ସେ ପୁଅ ଉଦ୍ଦେଶ୍ୟରେ ଏ ସଂକେତ କରି ନ ଥିଲେ; କାରଣ ତାଙ୍କ ଜାଣିବାରେ ପୁଅ ବ୍ରିଷ୍ଟଲ୍ ଯାଇଛି। ଦୈବାତ୍ ସିନା ସେ ଫେରିଆସି ସେଠି ପହଞ୍ଚିଥିଲେ। ତେଣୁ ଯାହା ସାଥିରେ ସେ ଦେଖାକରିବାକୁ ଯାଇଥିଲେ, ତାରି ଉଦ୍ଦେଶ୍ୟରେ ଏଇ ସଙ୍କେତ କରିଥିଲେ; କିନ୍ତୁ ଏଇ 'କୁ' ସଙ୍କେତ ଅଷ୍ଟ୍ରେଲିଆର ଲୋକେ ନିଜ ଭିତରେ ବ୍ୟବହାର କରନ୍ତି। ତେଣୁ ନିଶ୍ଚିତଭାବେ ଅନୁମାନ କରାଯାଇପାରେ ଯେ ମାକାର୍‌ଥି ହ୍ରଦକୂଳରେ ଯାହାକୁ ଦେଖାକରିବାକୁ ଯାଇଥିଲେ, ସେ ଅଷ୍ଟ୍ରେଲିଆରେ ଥିଲେ।

''ତାପରେ ଏଇ 'ରାଟ୍' ଶବ୍ଦ ?''

''ହୋମ୍ ପକେଟରୁ ଖଣ୍ଡେ କାଗଜ ବାହାର କରି ଟେବୁଲ୍ ଉପରେ ରଖି କହିଲେ, ''ଏଇଟା ହେଲା ଭିକ୍ଟୋରିଆ ଉପନିବେଶର ନକ୍ସା। କାଲି ରାତିରେ ଟେଲିଗ୍ରାମ୍ କରି ମୁଁ ବ୍ରିଷ୍ଟଲ୍‌ରୁ ମଗାଇଛି।'' ମାନଚିତ୍ରର ଗୋଟାଏ ଅଂଶ ହାତରେ ଘୋଡ଼ାଇ ରଖି ସେ କହିଲେ, ''କ'ଣ ଲେଖାହୋଇଛି ପଢ଼।''

ମୁଁ ପଢ଼ିଲି, ''ରାଟ୍''। ତା'ପରେ ସେ ହାତଟା ଉଠାଇନେଲେ। ମୁଁ ପଢ଼ିଲି, ''ବାଲାରାଟ୍।''

''ତାହାହିଁ ଠିକ୍। ଏଇ ବାଲାରାଟ୍ ଶବ୍ଦଟା ସେ କହୁଥିଲେ। ସେଥିରୁ ତାଙ୍କ ପୁଅ କେବଳ ଶେଷ ଅକ୍ଷରର ଦୁଇଟା ଶୁଣିପାରିଛନ୍ତି– ସେ ତାଙ୍କ ହତ୍ୟାକାରୀର ନାଁ କହିବାକୁ ଚେଷ୍ଟାକରୁଥିଲେ – ବାଲାରାଟ୍‌ର ଅମୁକ ଲୋକ। ଦେଖ, ମୁଁ ବର୍ତ୍ତମାନ ଅନୁସନ୍ଧାନ ସୀମା ବହୁତ ଛୋଟ କରିପାରିଛି। ତା'ପରେ ଧୂସର ରଙ୍ଗର ପୋଷାକ କଥା। ଏବେ ଆମେ ଶୂନ୍ୟରୁ ଆସି ଗୋଟାଏ ନିର୍ଦ୍ଦିଷ୍ଟ ଧାରଣା କରିପାରିଛେ। ହତ୍ୟାକାରୀ ବାଲାରାଟ୍‌ର ଜଣେ ଅଷ୍ଟ୍ରେଲିଆବାସୀ, ଆଉ ତାର ଗୋଟେ ଧୂସର ପୋଷାକ ଅଛି।''

''ନିଶ୍ଚୟ।''

''ତା'ପରେ ଆମର ଆଜିର ଅଭିଯାନ କଥା। ଭୂଇଁ ପରୀକ୍ଷା କରି ମୁଁ ଲୋକଟାର ବ୍ୟକ୍ତିତ୍ୱର କେତେଟା ଛୋଟ ଛୋଟ ତଥ୍ୟ ପାଇଲି। ମୂର୍ଖ ଲେସ୍‌ଟ୍ରେଡ୍‌କୁ ମୁଁ ସେସବୁ କହିଛି।''

''କିନ୍ତୁ ତୁମେ ସେସବୁ ତଥ୍ୟ ଜାଣିଲ କିପରି ?''

''ତୁମେ ମୋ ପଦ୍ଧତି ଜାଣ, ସେ ହେଲା ଅତି ଛୋଟ ଛୋଟ ଜିନିଷକୁ ଲକ୍ଷ୍ୟ କରିବା।''

''ବୁଝିଲି, ତା ଉଚ୍ଚତା ତୁମେ ତା ପହଣ୍ଡରୁ ଜାଣିଥିବ। ଆଉ ଜୋତାଚିହ୍ନରୁ ଜୋତାର ଆକାର ଜାଣିଥିବ।''

''ହଁ, ସେ ଜୋତାଗୁଡ଼ା ସାଧାରଣ ଜୋତା ନୁହେଁ।''

''କିନ୍ତୁ ସେ ଛୋଟା ବୋଲି ଜାଣିଲ କେମିତି ?''

''ଡାହାଣ ପାଦର ଚିହ୍ନ ବାଁ ପାଦଚିହ୍ନଠାରୁ କମ୍ ସ୍ପଷ୍ଟ। ସେ ଡାହାଣ ପାଦ ଉପରେ କମ୍ ଭରାଦେଇଛି କାହିଁକି ? କାରଣ ସେ ଛୋଟା।''

''କିନ୍ତୁ ସେ ବାଉଁଆ କଥା ?''

''ଅନୁସନ୍ଧାନବେଳେ ଡାକ୍ତର ଯେଉଁ ବିବରଣୀ ଦେଇଛନ୍ତି, ତୁମେ ତ ପଢ଼ିଛ। ମାଡ଼ଟା ଠିକ୍ ପଛରୁ ହୋଇଛି। ତଥାପି ବାଁ ପାଖଟାରେ ବେଶି ଆଘାତ ଲାଗିଛି। ତେଣୁ ମାରିବା ଲୋକ ବାଉଁଆ ନ ହେଲେ ଏହା ହେବ କିପରି ? ବାପ-ପୁଅଙ୍କ ଭିତରେ କଥାବାର୍ତ୍ତାବେଳେ ସେ ଗଛ ପଛପାଖରେ ଠିଆହୋଇଥିଲା। ସେଠି ସିଗାରେଟ୍ ମଧ୍ୟ ପିଇଛି। ମୁଁ ସେଠୁ ସିଗାରେଟ୍‌ର ପାଉଁଶ ପାଇଛି। ସିଗାରେଟ୍ ପାଉଁଶ ବିଷୟରେ ମୋର ବିଶେଷ ଜ୍ଞାନ ଅଛି; ତେଣୁ ସେଟା ଭାରତୀୟ ସିଗାରେଟ୍ ବୋଲି ମୁଁ କହିଥିଲି। ପାଉଁଶ ପାଇଲା ପରେ ମୁଁ ଚାରିପାଖ ଖୋଜି ସିଗାରେଟ୍‌ର ମୁଣ୍ଡିଖଣ୍ଡ ପାଇଲି। ସେଟା ହେଲା ରୋଟରଡାମ୍ ତିଆରି ଭାରତୀୟ ସିଗାରେଟ୍।''

''ଆଉ ସିଗାରେଟ୍ ପାଇପ୍ ?''

''ମୁଁ ଦେଖିଲି ଯେ ସିଗାରେଟ୍ ମୁଣ୍ଡିଟା ପାଟିରେ ଲାଗିନାହିଁ; ତେଣୁ ଜାଣିଲି ସେ ପାଇପ୍ ବ୍ୟବହାର କରିଛି। ସିଗାରେଟ୍ ଅଗଟା ଦାନ୍ତରେ କାମୁଡ଼ା ନ ହୋଇ କଟାଯାଇଛି। କଟାଟା ପୁଣି ଚିକ୍କଣ ନୁହେଁ। ତେଣୁ ଥୁଣ୍ଟା ଛୁରୀ କଥା ମୁଁ ଜାଣିପାରିଲି।''

ମୁଁ କହିଉଠିଲି, ''ହୋମ୍ସ, ଲୋକଟା ଚାରିପାଖରେ ତୁମେ ଏମିତି ଜାଲ ବିଛେଇ ଦେଇଛ ଯେ, ସେ ଆଉ ଖସିଯାଇ ପାରିବ ନାହିଁ। ତା'ଛଡ଼ା ତୁମେ ଗୋଟିଏ ନିରୀହ ଜୀବନ ରକ୍ଷାକରିଛ; ସତେ ଯେମିତି ତୁମେ ତା ବେକର ଫାଶୀ ଦଉଡ଼ିକୁ କାଟିଦେଇଛ। ଘଟଣାଟା ଯେଉଁଆଡ଼କୁ

ଯାଉଛି, ମୁଁ ଠିକ୍ ଜାଣିପାରିଛି। ଅପରାଧୀ ହେଲା—''

''ମିଷ୍ଟର୍ ଜନ୍ ଟର୍ନର୍,'' —କହି ହୋଟେଲ୍ ଚାକର ଆମ ବସିବା ଘରର ଦରଜାଟା ଖୋଲିଦେଲା। ତା' ପଛେ ପଛେ ଜଣେ ଭଦ୍ରଲୋକ। ଧୀରେ ଧୀର ଛୋଟେଇ ଛୋଟେଇ ସେ ଘର ଭିତରକୁ ଆସିଲେ। ଜରାଗ୍ରସ୍ତ ଶରୀର। ତଥାପି ତାଙ୍କ ଅଙ୍ଗ-ପ୍ରତ୍ୟଙ୍ଗରୁ ଜଣାଯାଉଥିଲା, ଦେହରେ ଢେର୍ ବଳ ଅଛି। ଚେହେରାରେ ଆଭିଜାତ୍ୟର ଛାପ। ଓଠ ଦୁଇଟା ଏବଂ ନାକପୁଡ଼ାତଳ ସାମାନ୍ୟ ନୀଳବର୍ଣ୍ଣ। ଦେଖିଲାମାତ୍ରେ ଜାଣିଲି ସେ କିଛି ମାରାତ୍ମକ ରୋଗକବଳରେ ପଡ଼ିଛନ୍ତି।

ଖୁବ୍ ନମ୍ରଭାବରେ ହୋମ୍ସ କହିଲେ, ''ସେଇ ସୋଫା ଉପରେ ବସନ୍ତୁ। ଆପଣ ବୋଧହୁଏ ମୋ ଚିଠି ପାଇଛନ୍ତି ?''

''ହଁ, ଜଗୁଆଳି ମୋତେ ଚିଠିଟା ଦେଲା। ଆପଣ ଲେଖିଛନ୍ତି ଯେ ଅପବାଦ ଲୁଚାଇବା ପାଇଁ ମୁଁ ଆପଣଙ୍କ ସାଥିରେ ଏଠି ଦେଖାକରିବି।''

''ହଁ, ମୁଁ ଭାବିଲି, ମୁଁ ଆପଣଙ୍କ ପାଖକୁ ଗଲେ ଲୋକେ ଭୁଟ୍‌ଭାଟ୍ ହେବେ।''

''ଆପଣ ମୋତେ କାହିଁକି ଡକେଇଲେ ?'' ସେ ଖୁବ୍ ବିବ୍ରତ ହୋଇ ହୋମ୍ସଙ୍କ ଆଡ଼କୁ ଚାହିଁଲେ; ସତେ ଯେମିତି ତାଙ୍କ ପ୍ରଶ୍ନର ଉତ୍ତର ପାଇସାରିଛନ୍ତି।

''ହଁ, ମୁଁ ଆପଣଙ୍କୁ ଡକେଇଛି। ମୁଁ ମାକାର୍‌ଥିଙ୍କ ବିଷୟରେ ସବୁ ଜାଣେ।''

ଦୁଇ ହାତପାପୁଲିରେ ମୁହଁ ଢାଙ୍କି ବୃଦ୍ଧ କହିଲେ, ''ଭଗବାନ୍ ମୋତେ ଦୟାକରନ୍ତୁ; ମୁଁ କିନ୍ତୁ ଯୁବକ ମାକାର୍‌ଥିଙ୍କର କୌଣସି ଅନିଷ୍ଟ ହେବାକୁ ଦେଇନଥାନ୍ତି। ସତ କହୁଛି, ଯଦି ବିଚାରାଳୟରେ ଘଟଣାଟା ତାଙ୍କ ବିରୁଦ୍ଧରେ ଯାଇଥାନ୍ତା, ମୁଁ ନିଜେ ଯାଇ ସତକଥା କହିଦେଇଥାନ୍ତି।''

''ଆପଣଙ୍କଠୁ ଏକଥା ଶୁଣି ମୁଁ ଖୁବ୍ ଖୁସିହେଲି।'' ଗମ୍ଭୀରଭାବରେ ହୋମ୍ସ କହିଲେ।

''ବର୍ତ୍ତମାନ ବି ମୁଁ ସତକଥାଟା ବାହାରେ ପ୍ରକାଶ କରିଦିଅନ୍ତି; କିନ୍ତୁ କେବଳ ମୋ ଝିଅ ପାଇଁ। ବିଚାରୀ ଯେବେ ଶୁଣିବ ମୁଁ ଆରେଷ୍ଟ ହୋଇଛି, ଏକାବେଳକେ ଭାଙ୍ଗିପଡ଼ିବ।''

''କଥାଟା ସେ ଯାଏ ଯାଇନପାରେ।''

''କ'ଣ କହିଲେ ?''

''ମୁଁ ସରକାରୀ ଲୋକ ନୁହେଁ। ଆପଣଙ୍କ ଝିଅ ମୋତେ ଏଠିକି ଡକାଇଛନ୍ତି, ଆଉ ମୁଁ ତାଙ୍କ ପାଇଁ କାମ କରୁଛି। ଯାହାହେଉ ବିଚରା ମାକାରଥିଙ୍କୁ କୌଣସି ପ୍ରକାରେ ଖଲାସ କରାଇବାକୁ ହେବ।''

''ମୁଁ ମରିବା ଉପରେ। କେତେ ବର୍ଷ ହେଲା ଡାଇବେଟିସ୍ ରୋଗରେ ପଡ଼ିଛି। ଡାକ୍ତରଙ୍କ ମତରେ ମୁଁ ଆଉ ମାସେଖଣ୍ଡେ ବଞ୍ଚିବି କି ନାହିଁ; ତଥାପି ମୁଁ ଜେଲ୍ ଭିତରେ ନ ମରି ମୋ ଘରେ ମରିବାକୁ ଚାହେଁ।''

ହୋମ୍ ହାତରେ କଲମ ଧରି ଟେବୁଲ୍ ପାଖରେ ବସିଲେ। ପାଖରେ ବିଡ଼ାଏ କାଗଜ। ତା'ପରେ କହିଲେ, —''ସତକଥାଟା ଆମ ଆଗରେ କହନ୍ତୁ। ମୁଁ ଘଟଣାଟା ଲେଖିରଖେ। ଆପଣ ସେଥିରେ ଦସ୍ତଖତ କରିବେ, ଆଉ ଡାକ୍ତର ୱାଟ୍‌ସନ୍ ସାକ୍ଷୀ ହେବେ। ମାକାରଥିଙ୍କୁ ଖଲାସ କରାଇବାକୁ ଅନ୍ୟ କିଛି ଉପାୟ ନ ପାଇଲେ, ମୁଁ ଆପଣଙ୍କ ସ୍ୱୀକାରୋକ୍ତି ବିଚାରାଳୟରେ ଦାଖଲ କରିବି। ମୁଁ ଜବାବ ଦେଉଛି, ନିହାତି ଦର୍କାର ନ ହେଲେ ମୁଁ ତାହା ବ୍ୟବହାର କରିବିନାହିଁ।''

''କଲେ ବି କିଛି କ୍ଷତି ନାହିଁ। ଏ କେଶ୍ ବିଚାର ହେବାଯାଏ ମୁଁ ବଞ୍ଚିବି କି ନାହିଁ ତାର ଠିକଣା ନାହିଁ। ତେଣୁ କିଛି ଯାଏଆସେନା; କିନ୍ତୁ ମୋ ଝିଅ ଆଲିସ୍ ଯେମିତି ଆଘାତ ନ ପାଏ। ଏଥର ମୁଁ ଘଟଣାଟା ପରିଷ୍କାର କରି ଆପଣଙ୍କୁ କହୁଛି। ଅବଶ୍ୟ କାମଟା କରିବାକୁ ମତେ ଯଥେଷ୍ଟ ସମୟ ଲାଗିଛି; କିନ୍ତୁ କହିବାକୁ ଖୁବ୍ କମ୍ ସମୟ ଲାଗିବ।

''ଆପଣ ଏଇ ମୃତ ମାକାରଥିଙ୍କୁ ଜାଣନ୍ତି ନାହିଁ। ସେ ହେଲା ସୟତାନର ଗୋଟେ ପ୍ରତିମୂର୍ତ୍ତି। ଏ କଥା ନିରାଟ ସତ। ଭଗବାନ ଆପଣଙ୍କୁ ଏପରି ଲୋକର କବଳରୁ ରକ୍ଷାକରନ୍ତୁ। ଆଜିକି କୋଡ଼ିଏ ବର୍ଷ ହେଲା ମୁଁ ତା' କବଜରେ ପଡ଼ିଯାଇଛି, ଆଉ ସେ ମୋ ଜୀବନଟାକୁ ଛାରଖାର କରିଦେଇଛି। ମୁଁ କେମିତି ତା କବଳରେ ପଡ଼ିଲି ପ୍ରଥମେ ସେକଥା କହିବି।

''ସେ ହେଲା ବହୁଦିନ ତଳର କଥା— ସୁନାଖଣିରେ ଘଟିଥିଲା। ସେତେବେଳକୁ ମୁଁ ଯୁବକ। ଦେହର ରକ୍ତ ଖୁବ୍ ଗରମ। ଫଳରେ ମୁଁ ଲଗାମଛଡ଼ା ହୋଇ ଯେକୌଣସି କାମ କରିବାକୁ ତିଆର ହେଲି। ଖରାପ

ଲୋକଙ୍କ ମେଳରେ ପଡ଼ି ମୁଁ ମଦ ଖାଇ ମାତାଲ ହେଲି । ବଣରେ ଯାଇ ଲୁଚିରହିଲି । ମୋଟାମୋଟି ମୁଁ ହେଲି ଗୋଟେ ଦସ୍ୟୁ । ଆମେ ଥିଲୁ ଛଅ ଜଣ । ବଣ ଭିତରେ ବିଭିନ୍ନ ଜାଗାରେ ଆମର ଆଡ୍‌ଡ଼ା ବନେଇଥିଲୁ । କେତେବେଳେ ରାସ୍ତାରେ ଗାଡ଼ିସବୁ ଅଟକାଇ ଲୁଟ୍ କଲୁ । ସେତେବେଳେ ମୋ ନାଁ ଥିଲା 'ବାଲାରାଟ୍‌ର ବ୍ଲାକ୍ ଜାକ୍' । ଏବେ ବି ସେଠାରେ ଲୋକେ ଆମ ଦଳକୁ 'ବାଲାରାଟ୍‌ର ଦସ୍ୟୁଦଳ' ବୋଲି ମନେରଖିଛନ୍ତି ।

''ଦିନକର କଥା । ସୁନା ବୋଝେଇ ଗୋଟେ ଗାଡ଼ି ବାଲାରାଟ୍‌ରୁ ମେଲବୋର୍ଣ୍ଣ ଯାଉଥାଏ । ଆମେ ଅପେକ୍ଷା କଲୁ । ଗାଡ଼ି ଆସିବାମାତ୍ରେ ଆକ୍ରମଣ କଲୁ । ସେଥିରେ ଛଅଜଣ ସିପାହି ଥିଲେ । ଆମେ ବି ଥିଲୁ ଛଅଜଣ । ଯାହାହେଉ ପ୍ରଥମ ଆକ୍ରମଣରେ ତାଙ୍କ ଭିତରୁ ଚାରିଜଣ ମଲେ । ଆମ ଭିତରୁ ମଧ୍ୟ ତିନିଜଣ ମଲେ । ଶେଷରେ ଆମେ ସବୁ ଲୁଟ୍ କରିନେଲୁ । ମୁଁ ଡ୍ରାଇଭର୍ ମୁଣ୍ଡ ପାଖରେ ପିସ୍ତଲ ରଖି ଠିଆହୋଇଥାଏ । ସେ ଡ୍ରାଇଭର୍ ହେଉଛି ଏଇ ମାକାର୍‌ଥି । ଆଜି ଭାବୁଛି, ସେତିକିବେଳେ ତାକୁ ଶେଷ କରିଦେଇଥିଲେ ଭଲ ହୋଇଥାନ୍ତା; କିନ୍ତୁ ମୁଁ ତାକୁ ଛାଡ଼ିଦେଲି । ଅବଶ୍ୟ ତା ଆଖିର କ୍ରୁର ଚାହାଣିରୁ ମୁଁ ଜାଣିଲି ଭବିଷ୍ୟତରେ ସେ ପ୍ରତିଶୋଧ ନେବ ବୋଲି ଭାବୁଛି । ସୁନା ଧରି ଆମେ ଚାଲିଗଲୁ, ଆଉ ଖୁବ୍ ଧନୀ ହୋଇଗଲୁ । ତା'ପରେ ଇଂଲଣ୍ଡକୁ ଚାଲିଆସିଲୁ । ଭାଗ୍ୟକୁ କେହି କିଛି ସନ୍ଦେହ କରିନାହାନ୍ତି । ମୁଁ ମୋ ପୁରୁଣା ସାଥୀମାନଙ୍କ ପାଖରୁ ଅଲଗା ହୋଇଗଲି । ସ୍ଥିରକଲି କେଉଁଠି ଶାନ୍ତିରେ ଭଦ୍ରଲୋକ ପରି ରହିବି । ଶେଷରେ ଏଇ ଜମିଦାରିଟା କିଣିଲି । ପାଖରେ ଥିବା ପଇସାରେ ଭଲ କାମ କରି ପାପର ପ୍ରାୟଶ୍ଚିତ୍ତ କରିବାକୁ ବସିଲି । ମୁଁ ବିବାହ କଲି । ମୋ ସ୍ତ୍ରୀ କିନ୍ତୁ ଏଇ ଝିଅଟିକୁ ଛାଡ଼ି ଅଳ୍ପ ବୟସରେ ମରିଗଲେ । ଏଇ ଛୋଟ ଶିଶୁଟି ମୋତେ ଭଲ ବାଟକୁ ଟାଣିନେଲା ପରି ଜଣାଗଲା । ମୋଟରେ ମୋ ଜୀବନର ଗତି ପୂରା ବଦଳିଗଲା । ମୁଁ ଅତୀତକୁ ଭୁଲିଯିବାକୁ ଲାଗିଲି । ସବୁ ଠିକ୍ ଚାଲିଥିଲା; ହଠାତ୍ ଧୂମକେତୁ ପରି ଏଇ ମାକାର୍‌ଥି ଆସି ପହଞ୍ଚିଲା ।

''ସେଦିନ ଗୋଟେ କାମରେ ମୁଁ ସହରକୁ ଯାଇଥାଏ । ରିଜେଣ୍ଟ ଷ୍ଟ୍ରୀଟ୍‌ରେ ତା ସାଥିରେ ଦେଖାହେଲା । ତା ଦେହରେ ଖଣ୍ଡେ ଜାମା କି

ପାଦରେ ହଳେ ଜୋତା ବି ନ ଥାଏ। ପଛଆଡୁ ଆସି ମୋ କାନ୍ଧରେ ହାତ ପକାଇ ସେ କହିଲା, 'ଆରେ ଜାକ୍ ଯେ! ଭଲ ହେଲା। ଆମେ ତୁମ ପରିବାରରେ ରହି ଚଳିଯିବୁ। ମୋଟେ ଦୁଇଜଣ– ମୁଁ ଆଉ ମୋ ପୁଅ। ଆମକୁ ପାଖରେ ରଖିବାକୁ ତୁମର ତ କିଛି ଅଭାବ ନାହିଁ। ଯଦି ରାଜି ନ ହୁଅ, ତେବେ ଜାଣିଥା ଏଟା ଇଂଲଣ୍ଡ, ଆଇନରେ ବନ୍ଧା ଦେଶ। ଚାରିଆଡ଼େ ପୋଲିସର ଆଖି।' ସେଇ ଦିନଠୁ ସେମାନେ ଆସି ଏଠି ରହିଲେ। ମୁଁ ମନାକରି ପାରିଲିନାହିଁ। ମୋର ସବୁଠୁ ଭଲ ଘରଟା ବିନା ପଇସାରେ ତାଙ୍କୁ ଛାଡ଼ିଦେଲି। ସେଇଦିନଠୁ ମୋ ସୁଖ ଶାନ୍ତି ସବୁ ଚାଲିଗଲା। ମୁଁ ଯୁଆଡ଼େ ଗଲେ ଏଇ ସୟତାନଟାର ମୁହଁ ଆଖି ଆଗରେ ନାଚିଲା। ମୋ ଝିଅ ଯେତିକି ଯେତିକି ବଡ଼ ହେଲା, ଅବସ୍ଥା ସେତିକି ସେତିକି ଖରାପ ହେଲା। ଲୋକଟା ଜାଣିଲା ଯେ ମୋ ଅତୀତ ପାଇଁ ମୁଁ ପୋଲିସ ଅପେକ୍ଷା ମୋ ଝିଅକୁ ବେଶି ଭୟ କରୁଛି। ସେ ଯାହା ଚାହିଁଲା, ମୁଁ ବିନା ଦ୍ୱିଧାରେ ସବୁ ଦେଲି। ଟଙ୍କାପଇସା, ଘରଦ୍ୱାର, ଜମିବାଡ଼ି ସବୁ ସେ ନେଲା। ଶେଷରେ ସେ ଗୋଟେ ଜିନିଷ ମାଗିଲା, ଯାହା ମୁଁ ଦେଇପାରିଲି ନାହିଁ। ସେ ମୋ ଝିଅ ଆଲିସ୍‌କୁ ମାଗିଲା।

''ସେତେବେଳକୁ ତା ପୁଅ ଆଉ ମୋ ଝିଅ ବଡ଼ ହୋଇଗଲେଣି। ମୋ ସ୍ୱାସ୍ଥ୍ୟର ଅବସ୍ଥା ଦେଖି ସେ ଭାବିଲା, ତା ପୁଅ ମୋର ସବୁ ସମ୍ପତ୍ତି କିପରି ପାଇବ– ମୋ ଝିଅକୁ ବିବାହ କଲେ। ମୁଁ କିନ୍ତୁ ଦୃଢ଼ ହୋଇ ରହିଲି। ତା ବଂଶର କଦର୍ଯ୍ୟ ରକ୍ତ ମୋ ବଂଶରେ ମିଶାଇବାକୁ ମୁଁ ଚାହୁଁ ନ ଥିଲି। ତା ପୁଅ ପ୍ରତି ମୋର କିଛି ଘୃଣା ନ ଥିଲା; କିନ୍ତୁ ତା ଦେହରେ ମାକାରଥିର ଅଭିଶପ୍ତ ରକ୍ତ ଥିଲା– ସେଇ ହେଲା ଯଥେଷ୍ଟ। ମୁଁ ମୋଟେ ରାଜି ହେଲି ନାହିଁ। ମାକାରଥି ମୋତେ ଧମକାଇଲା। ମୁଁ ତାକୁ ଜବାବ ଦେଲି ସେ ଯାହା ଇଚ୍ଛା କରିପାରେ। ଶେଷରେ ଏ ବିଷୟରେ କଥାବାର୍ତ୍ତା ପାଇଁ ସେଇ ହ୍ରଦକୂଳରେ ଆମେ ପରସ୍ପରକୁ ଭେଟିବୁ ବୋଲି କଥା ହେଲା।

''ସେଠିକି ଯାଇ ଦେଖିଲି, ସେ ତା ପୁଅ ସାଥିରେ କଥାବାର୍ତ୍ତା କରୁଛି। ତେଣୁ ମୁଁ ଗଛ ପଛପାଖେ ଅପେକ୍ଷା କଲି, ଆଉ ସିଗାରେଟ୍ ଖଣ୍ଡେ ଟାଣିଲି; କିନ୍ତୁ ତାଙ୍କ କଥା ଶୁଣି ମୋ ଭିତରର ସୟତାନ

ଚେଇଁଉଠିଲା । ମୋ ଝିଅକୁ ବିବାହ କରିବା ପାଇଁ ସେ ତା ପୁଅକୁ ବାଧ୍ୟ କରୁଥିଲା; ଝିଅର ଇଚ୍ଛାରେ କିଛି ଯାଏ ଆସେନା ବୋଲି କହୁଥିଲା— ସତେ ଯେମିତି ମୋ ଝିଅ ରାସ୍ତାକଡ଼ର ଭିଖାରୁଣୀ । ମୁଁ ଦେଖିଲି ଯେ କେବଳ ମୁଁ ନୁହେଁ, ମୋର ଯାହା କିଛି ଅଛି ସବୁ ଏଇ ସୟତାନଟାର କବଳରେ । ମୁଁ କ୍ରୋଧରେ ପାଗଳ ହୋଇଗଲି । ଏଇ ବନ୍ଧନଟା କ'ଣ ମୁଁ ଛିଣ୍ଡାଇ ପାରିବି ନାହିଁ? ମୁଁ ତ ଆସି ମରିବା ଉପରେ । ଯଦିଓ ମୋର ମୁଣ୍ଡ ଠିକ୍ ଥିଲା ଏବଂ ଶରୀରରେ ଯଥେଷ୍ଟ ବଳ ଥିଲା, ମୁଁ ବୁଝିଥିଲି ଯେ ମୋ ଭାଗ୍ୟଦ୍ୱାର ବନ୍ଦ; କିନ୍ତୁ ମୋର ସ୍ମୃତି ଆଉ ମୋର ଝିଅକୁ ରକ୍ଷାକରିବାକୁ ହେବ । ମୋତେ ସେଇ ସୟତାନଟାର ମୁହଁ ବନ୍ଦ କରିବାକୁ ହେବ । ମୁଁ ସେଇଆ କରିଛି ମିଷ୍ଟର୍ ହୋମ୍! ଦର୍କାର ହେଲେ ପୁଣି ତା'ହିଁ କରିବି । ମୁଁ ଯଥେଷ୍ଟ ପାପ କରିଛି । ସେଥିପାଇଁ ମୁଁ ପ୍ରାୟଶ୍ଚିତ୍ତ କରିବି; କିନ୍ତୁ ମୋ ଝିଅ କାହିଁକି ସେଥିପାଇଁ ଘାଣ୍ଟି ହେବ? ଗୋଟେ ଘୃଣ୍ୟ ବିଷାକ୍ତ ପଶୁକୁ ମାରିଲା ପରି ମୁଁ ତାକୁ ମାରିଛି । ତା' ଚିତ୍କାର ଶୁଣି ତା' ପୁଅ ଫେରିଆସିଲା; କିନ୍ତୁ ମୁଁ ସେତେବେଳକୁ ଜଙ୍ଗଲ ଭିତରକୁ ଚାଲିଯାଇଥିଲି । ପଳାଇଲାବେଳେ ମୋ କୋଟ୍‌ଟା ପଡ଼ିଯାଇଥିଲା । ସେଟା ଆଣିବା ପାଇଁ ମୁଁ ବାଧ୍ୟ ହୋଇ ଆଉ ଥରେ ସେ ଜାଗାକୁ ଗଲି । ଏଇ ହେଲା ସତ ଘଟଣା ।''

ବିବରଣୀଟା ହୋମ୍ ଲେଖିସାରିଥିଲେ । ବୃଦ୍ଧ ସେଥିରେ ଦସ୍ତଖତ କଲା ପରେ ହୋମ୍ କହିଲେ, ''ମୁଁ ଆପଣଙ୍କର ବିଚାର କରିପାରିବି ନାହିଁ— ଭଗବାନ କରନ୍ତୁ, ଆମର ସେ ମନୋବୃତ୍ତି ନ ଆସୁ ।''

''ଆପଣ ତା'ହେଲେ ବର୍ତ୍ତମାନ କ'ଣ କରିବେ?''

''ଆପଣଙ୍କ ସ୍ୱାସ୍ଥ୍ୟଦୃଷ୍ଟିରୁ ମୁଁ କିଛି କରିବି ନାହିଁ । ଆପଣ ଜାଣନ୍ତି ଯେ ଖୁବ୍ ଶୀଘ୍ର ଏ ଦେଶର ବିଚାରାଳୟଠାରୁ ଆହୁରି ଏକ ବଡ଼ ବିଚାରାଳୟରେ ଆପଣଙ୍କ କାମର ଜବାବ ଦେବାକୁ ହେବ । ମୁଁ ଆପଣଙ୍କ ସ୍ୱୀକାରୋକ୍ତି ପାଖରେ ରଖିବି । ଯଦି ମାକାର୍ଥି ଦୋଷୀ ସାବ୍ୟସ୍ତ ହୁଅନ୍ତି, ତେବେ ମୁଁ ବାଧ୍ୟ ହୋଇ ଏହା ପ୍ରକାଶ କରିବି; ତା' ନହେଲେ ଅନ୍ୟ କୌଣସି ମଣିଷ ଆଖିରେ ଏହା ପଡ଼ିବ ନାହିଁ । ଆପଣ ବଞ୍ଚିଥାଆନ୍ତୁ ବା ମରିଥାଆନ୍ତୁ, ଏହା ମୋ ପାଖରେ ନିରାପଦରେ ରହିବ ।''

ଅତି ଦୁଃଖରେ ବୃଦ୍ଧ କହିଲେ, ''ତା'ହେଲେ ମୁଁ ଆସୁଛି। ନମସ୍କାର। ମୋର ମରଣବେଳେ ଆପଣ ମୋତେ ଯେତେ ଶାନ୍ତି ଦେଇଛନ୍ତି, ଯେତେବେଳେ ଆପଣଙ୍କ ମରଣକାଳ ଆସିବ, ଆପଣ ସେତିକି ଶାନ୍ତି ପାଇବେ।'' ଥରି ଥରି ଖୁବ୍ ଧୀରେ ସେ ଘର ଭିତରୁ ବାହାରିଗଲେ।

ମାକାରଥିଙ୍କ ଓକିଲ ହୋମ୍ ଦେଇଥିବା କେତେକ ପ୍ରତିବାଦ ବିଚାରାଳୟରେ ଆଗତ ହେଲା। ତା'ରି ଫଳରେ ମାକାରଥି ନିର୍ଦ୍ଦୋଷରେ ଖଲାସ ହେଲେ। ସାତମାସ ପରେ ଟରନର୍ ମରିଗଲେ। ଭବିଷ୍ୟତରେ ମାକାରଥି ଆଉ କୁମାରୀ ଟରନର୍ ତାଙ୍କ ଅତୀତର କଳଙ୍କ କାହାଣୀ କିଛି ନ ଜାଣି ପରସ୍ପର ନିକଟରେ ଆନନ୍ଦରେ ରହିବାର ଆଶା କରାଯାଏ।

□ □ □

# ଇଞ୍ଜିନିୟରଙ୍କ ବୁଢ଼ା ଆଙ୍ଗୁଠି

ମୁଁ ଯେଉଁ ଘଟଣା କହିବାକୁ ଯାଉଛି, ତାହା ଘଟିଥିଲା ଅଣାନବେ ମସିହାରେ। ସେତେବେଳକୁ ଖରାଦିନ। ଅଳ୍ପଦିନ ହେଲା ମୋର ବିବାହ ହୋଇଥାଏ। ମୁଁ ମୋ ଡାକ୍ତରୀ ବ୍ୟବସାୟ ଆରମ୍ଭ କରିଦେଇଥାଏ। ତେଣୁ ବେକର୍ ଷ୍ଟ୍ରୀଟ୍‌ରେ ହୋମ୍‌ଙ୍କୁ ଛାଡ଼ି ମୁଁ ଅଲଗା ରହୁଥାଏ। ମଝିରେ ମଝିରେ ମୁଁ ତାଙ୍କୁ ଦେଖିବାକୁ ଯାଉଥାଏ, ଆଉ ଆମ ଘରଆଡ଼େ ବୁଲିଆସିବାକୁ ତାଙ୍କୁ ପ୍ରବର୍ତ୍ତାଉଥାଏ। ମୋ ଡାକ୍ତରୀ ବ୍ୟବସାୟ ବେଶ୍ ଆଗେଇଚାଲିଥାଏ। ମୁଁ ପାଡ଼ିଙ୍ଗଟନ୍ ଷ୍ଟେସନଠୁ ଅଳ୍ପ ଦୂରରେ ରହୁଥାଏ। ତେଣୁ କର୍ମଚାରୀମାନଙ୍କ ଭିତରୁ କେତେକ ରୋଗୀ ମୋ ପାଖକୁ ଆସୁଥାନ୍ତି। ତାଙ୍କ ଭିତରୁ ଜଣଙ୍କୁ ମୁଁ ଗୋଟେ ପୁରୁଣା ରୋଗରୁ ଭଲ କରିଥିଲି। ସେ ଚାରିଆଡ଼େ ମୋର ଡାକ୍ତରୀ ବିଦ୍ୟାର ପ୍ରଚାର କରି ମୋ ପାଖକୁ ରୋଗୀମାନଙ୍କୁ ପଠାଉଥିଲେ।

ଦିନେ ସକାଳ ସାତଟା ଆଗରୁ ଚାକରାଣୀ କବାଟ ଠକ୍ ଠକ୍ କଲା। ମୋ ନିଦ ଭାଙ୍ଗିଗଲା। ଚାକରାଣୀ କହିଲା, ''ପାଡ଼ିଙ୍ଗଟନ୍‌ରୁ ଦୁଇଜଣ ଲୋକ ଆସି ଅପେକ୍ଷା କରିଛନ୍ତି।'' ମୁଁ ତରତର ହୋଇ ଜାମାପଟା ପିନ୍ଧିନେଲି; କାରଣ ମୋ ଅନୁଭୂତିରୁ ମୁଁ ଜାଣିଥିଲି ଯେ ରେଲ୍‌ୱେ କେଶ୍‌ଗୁଡ଼ା ସାମାନ୍ୟ ନୁହେଁ। ମୁଁ ଖୁବ୍ ଚଞ୍ଚଳ ତଳକୁ ଓହ୍ଲାଇଗଲି। ମୋର ପରିଚିତ ବନ୍ଧୁ ରେଲ୍‌ୱେ ଗାର୍ଡ଼ ଘରଭିତରୁ ବାହାରି ଆସି କବାଟଟା ଜୋର୍‌ରେ ବନ୍ଦ କରିଦେଲେ। ତା'ପରେ ଆଙ୍ଗୁଠିରେ ଠାରି ଫୁସ୍‌ଫୁସ୍ କରି ସେ କହିଲେ, ''ମୁଁ ତାକୁ ସେଇ ଘରେ ରଖିଛି। ସେ ଠିକ୍ ଅଛି।''

''କାହାକୁ ?'' ମୁଁ ପଚାରିଲି; କାରଣ ତାଙ୍କ ଢଙ୍ଗଢାଙ୍ଗରୁ ଜଣାଗଲା ଯେମିତି ସେ କୌଣସି ବିଚିତ୍ର ଜୀବକୁ ମୋ କୋଠରି ଭିତରେ ବନ୍ଦକରି ରଖିଛନ୍ତି।

ସେମିତି ଧୀରେ ଧୀରେ ସେ କହିଲେ, ''ଜଣେ ନୂଆ ରୋଗୀ। ଭାବିଲି, ମୁଁ ନିଜେ ତାକୁ ସାଥିରେ ଧରି ଆସିବି; ତା'ହେଲେ ସେ

ଖସିଯାଇ ପାରିବନାହିଁ। ସେ ସେଇ ଘରଭିତରେ, ବେଶ୍ ଭଲ ଅଛି। ଏଥର ମୁଁ ଯାଏ ଡାକ୍ତର ! ତୁମପରି ମୋର ମଧ କାମ ଅଛି।''

ଏତିକି କହି ସେ ଚାଲିଗଲେ। ତାଙ୍କୁ ଧନ୍ୟବାଦ ଦେବାପାଇଁ ମଧ ମୋତେ ସମୟ ଦେଲେନାହିଁ। ଘର ଭିତରକୁ ଯାଇ ଦେଖିଲି ଟେବୁଲ୍ ପାଖରେ ଜଣେ ଭଦ୍ରଲୋକ ବସିଛନ୍ତି। ତାଙ୍କର ପୋଷାକ ଖୁବ୍ ସାଦାସିଧା। ମୁଣ୍ଡର କନା ଟୋପି ବାହାର କରି ମୋ ବହି ଉପରେ ରଖିଦେଇଛନ୍ତି। ତାଙ୍କର ଗୋଟେ ହାତରେ ଖଣ୍ଡେ ରୁମାଲ୍ ଗୁଡ଼ାହୋଇଥିଲା। ସେଥିରେ ଚାରିଆଡ଼େ ରକ୍ତର ଦାଗ। ସେ ଯୁବକ। ବୟସ ପଚିଶରୁ ଅଧିକ ହେବନାହିଁ। ମୁହଁ ତାଙ୍କର ମଳିନ ଦେଖାଯାଉଥିଲା। ଜଣାଗଲା, ଯେମିତି ସେ କୌଣସି ଉତ୍ତେଜନାଯୋଗୁଁ କଷ୍ଟ ପାଉଛନ୍ତି। ସେ ଉତ୍ତେଜନାକୁ ଚାପିବା ପାଇଁ ତାଙ୍କ ମନର ବଳ ନାହିଁ।

ମୋତେ ଦେଖି ସେ କହିଲେ, ''କ୍ଷମାକରିବେ ଡାକ୍ତର ! ଏତେ ସକାଳୁ ଆପଣଙ୍କୁ ଉଠାଇଥିବାରୁ ମୁଁ ଦୁଃଖିତ; କିନ୍ତୁ କାଲି ରାତିରେ ମୋର ଗୋଟେ ବଡ଼ ଧରଣର ଦୁର୍ଘଟଣା ଘଟିଗଲା। ମୁଁ ଆଜି ସକାଳ ଟ୍ରେନ୍‌ରେ ଆସିଲି। ପାଡ଼ିଙ୍ଗଟନ୍ ଷ୍ଟେସନରେ ପଚାରିଲି– କେଉଁଠି ମୁଁ ଜଣେ ଡାକ୍ତର ପାଇବି ? ଜଣେ ଭଦ୍ରଲୋକ ଦୟାକରି ମୋତେ ଏଠିକି ନେଇଆସିଲେ। ଆପଣଙ୍କ ଚାକରାଣୀ ହାତରେ ମୁଁ ଖଣ୍ଡେ କାର୍ଡ଼ ଦେଇଥିଲି; କିନ୍ତୁ ଦେଖୁଛି, ସେଖଣ୍ଡ ଏଇ ପାଖ ଟେବୁଲ୍ ଉପରେ ଥୁଆହୋଇଛି।''

ମୁଁ କାର୍ଡ଼ଖଣ୍ଡ ନେଇ ଦେଖିଲି। ଲେଖାଥିଲା, 'ମିଷ୍ଟର୍ ଭିକ୍ଟର ହାଥରଲି, ହାଇଡ୍ରୋଲିକ୍ ଇଞ୍ଜିନିୟର, ୧୬ ଏ, ଭିକ୍ଟୋରିଆ ଷ୍ଟ୍ରୀଟ୍, ତୃତୀୟ ମହଲା।' ସେଇ ହେଲା ସକାଳର ଏଇ ଆଗନ୍ତୁକଙ୍କର ନାମଧାମ। ଚଉକି ଉପରେ ବସିପଡ଼ି ମୁଁ କହିଲି, ''ଆପଣଙ୍କୁ ଅପେକ୍ଷାରେ ରଖିଥିବାରୁ ମୁଁ ଦୁଃଖିତ। ଦେଖୁଛି, ଆପଣ ସାରା ରାତି ରେଳଗାଡ଼ିରେ ଯାତ୍ରା କରିଛନ୍ତି। ସେଟା ବଡ଼ ବିରକ୍ତିକର।''

''ରାତିଟା ମୋର ଯେମିତି କଟିଛି, ତାକୁ ବିରକ୍ତିକର କୁହାଯାଇପାରେନା।'' ଏତିକି କହି ସେ ପାଗଳ ପରି ଖୁବ୍ ଜୋର୍‌ରେ ହୋ ହୋ ହୋଇ ହସିଉଠିଲେ। ସେ ହସ କାନଫଟା ହସ। ମୁଁ ଡାକ୍ତର। ମତେ ବଡ଼ ରାଗ ଲାଗିଲା। କହିଲି, ''ଚୁପ୍ କର ! ଧୀର

ହୋଇ ବସ !'' ଏତିକି କହି ମୁଁ ଗୋଟେ ସୁରେଇରୁ ମୁନ୍ଦେ ପାଣି ଢାଳିଲି; କିନ୍ତୁ ମୋ କହିବାଟା ବୃଥା । ସେ ପୁଣି ଜୋର୍‌ରେ ହସିଲାଗିଲେ, ସତେ ଯେମିତି ଗୋଟେ କିଛି ବଡ଼ ବିପଦ ଚାଲିଯାଇଛି । କିଛିକ୍ଷଣ ପରେ ସେ ପୁଣି ପ୍ରକୃତିସ୍ଥ ହେଲେ । ବଡ଼ ଶ୍ରାନ୍ତ-କ୍ଲାନ୍ତ ଦେଖାଯାଉଥାନ୍ତି ।

ସେ ଧକେଇ ହୋଇ କହିଲେ, ''ମୁଁ ବଡ଼ ଭୁଲ୍ କରୁଛି ।''

''ମୋଟେ ନୁହେଁ'' କହି ମୁଁ ପାଣିରେ କିଛି ବ୍ରାଣ୍ଡି ମିଶାଇ ତାଙ୍କୁ ପିଆଇଦେଲି । ତାଙ୍କ ରକ୍ତହୀନ ମୁହଁ ପୁଣି ସତେଜ ହୋଇଆସିଲା ।

ସୁସ୍ଥ ହୋଇ ସେ କହିଲେ, ''ଡାକ୍ତର, ଦୟା କରି ମୋ ବୁଢ଼ା ଆଙ୍ଗୁଠିଟା ଦେଖନ୍ତୁ । ବୁଢ଼ା ଆଙ୍ଗୁଠି ତ ନୁହେଁ, ବରଂ କହିବି ଯେଉଁ ଜାଗାରେ ବୁଢ଼ା ଆଙ୍ଗୁଠିଟା ଥିଲା ।''

ରୁମାଲ୍‌ଟା ଫିଟାଇ ଦେଇ ସେ ମୋ ଆଡ଼କୁ ହାତଟା ବଢ଼ାଇଦେଲେ । ତାହା ଦେଖି ମୋର ଟାଣୁଆ ଛାତି ମଧ୍ୟ ଥରିଉଠିଲା । ହାତରେ ଚାରିଟା ଆଙ୍ଗୁଠି ଥିଲା, ଆଉ ବୁଢ଼ା ଆଙ୍ଗୁଠିଟା ମୂଳରୁ କଟିଯାଇଛି । ସେ ଜାଗାଟା ରକ୍ତରେ ଲାଲ୍ ।

''ହେ ଭଗବାନ୍ !'' ମୁଁ ଚିତ୍କାର କରି ଉଠିଲି, ''ଏଇଟା ବଡ଼ ଭୟଙ୍କର କ୍ଷତ । ଅନେକ ରକ୍ତ ବୋହିଥିବ ନିଶ୍ଚୟ ।''

''ହଁ, ବହୁତ ରକ୍ତ ଯାଇଛି । ଏହା ଘଟିଲାବେଳେ ମୁଁ ଜ୍ଞାନଶୂନ୍ୟ ହୋଇଗଲି । ସେମିତି ଚେତାହୀନ ହୋଇ ବହୁତ ବେଳଯାଏ ରହିଥିବି । ଯେତେବେଳେ ମୋର ଚେତା ଆସିଲା, ଦେଖିଲି ଖୁବ୍ ଜୋର୍‌ରେ ରକ୍ତ ବାହାରୁଛି । ମୁଁ ରୁମାଲଟାର ଗୋଟେ ପାଖ ହାତ କଟଟି ଚାରିପାଖେ ଗୁଡ଼େଇ ଦେଇ ଖଣ୍ଡେ ଲଇରେ ଜୋର୍‌ରେ ବାନ୍ଧିଦେଲି ।''

''ଚମତ୍କାର ! ଆପଣ ଜଣେ ଡାକ୍ତର ହୋଇଥିଲେ ଭଲ ହୋଇଥାଆନ୍ତା ।''

''ଏଟା ହେଲା ହାଇଡ୍ରୋଲିକ୍ ଆଘାତ, ଆଉ ମୁଁ ଯେଉଁଠି କାମ କରେ ସେଇଠି ଘଟିଲା ।''

କ୍ଷତଟା ପରୀକ୍ଷା କରି ମୁଁ କହିଲି, ''କୌଣସି ଏକ ଓଜନିଆ ଆଉ ମୁନିଆଁ ହତିଆରରେ ଏ ଆଘାତ ହୋଇଛି ।''

''ହଁ, କଟୁରି ପରି କିଛି ଜିନିଷ ହେବ ।''

''ଏହା ଏକ ଦୁର୍ଘଟଣା ବୋଧହୁଏ ?''

''ମୋଟେ ନୁହେଁ।''

''କ'ଣ କହିଲେ ? ତେବେ କ'ଣ ମାରାତ୍ମକ ଆକ୍ରମଣ ?''

''ହଁ, ଭୀଷଣ ମାରାତ୍ମକ।''

''ଆପଣଙ୍କ କଥା ଶୁଣି ମୁଁ ଭୟଭୀତ ହେଉଛି।''

କ୍ଷତସ୍ଥାନଟା ସଫା କରି ଔଷଧ ଲଗାଇଦେଲି। ତା' ଉପରେ ତୁଳା ଢାଙ୍କିଦେଇ ଭଲ ଭାବରେ ପଟି ବାନ୍ଧିଦେଲି। ସେ ଧୈର୍ଯ୍ୟ ଧରି ବସିଥାନ୍ତି। ମଝିରେ ମଝିରେ କଷ୍ଟଯୋଗୁଁ ଓଠ କାମୁଡୁଥାନ୍ତି। କାମ ସରିଲା ପରେ ପଚାରିଲି, ''କେମିତି ଲାଗୁଛି ?''

''ଖୁବ୍ ଭଲ, ଆପଣଙ୍କ ବ୍ରାଣ୍ଡି ଆଉ ବ୍ୟାଣ୍ଡେଜ୍ ମୋତେ ଜୀବନ ଦେଲା। ମୁଁ ଖୁବ୍ ଦୁର୍ବଳ ହୋଇ ପଡ଼ିଥିଲି। ମତେ ତ କମ୍ କଷ୍ଟ ସହିବାକୁ ପଡ଼ିନି ?''

''ଆପଣ ସେ କଥା ନ କହିବା ବରଂ ଭଲ; କାରଣ ତା' ଦ୍ୱାରା ଆପଣ ବେଶି ଦୁର୍ବଳ ହୋଇପଡ଼ିବେ।''

''ହଁ, ମତେ ପୋଲିସ୍‌କୁ ଏକଥା ଜଣାଇବାକୁ ହେବ। ତଥାପି ଶୁଣନ୍ତୁ! ମୋ ହାତରେ ଏଇ କ୍ଷତଟା ନ ଥିଲେ, କେହି ମୋ କଥା ବିଶ୍ୱାସ କରନ୍ତେ ନାହିଁ; କାରଣ ଘଟଣାଟା ହେଲା ଅତି ଅସାଧାରଣ, ଆଉ ତାକୁ ପ୍ରମାଣ କରିବାପାଇଁ ମୋ ହାତରେ କିଛି ତଥ୍ୟ ନାହିଁ। ଯଦି ବା ସେମାନେ ମୋତେ ବିଶ୍ୱାସ କରନ୍ତି, ତେବେ ମୁଁ ତାଙ୍କୁ ଯାହା ସୂତ୍ର ଯୋଗାଇପାରିବି ତାହା ଅତି ଅନିଶ୍ଚିତ ଆଉ କ୍ଷୀଣ। ତେଣୁ ପ୍ରକୃତ ନ୍ୟାୟ ମିଳିବ କି ନାହିଁ ମୋର ସନ୍ଦେହ।''

''ଯଦି ଏହା କୌଣସି ଏକ ରହସ୍ୟ, ଆଉ ଆପଣ ତାର ସମାଧାନ ଚାହାନ୍ତି, ତେବେ ମୋ କଥା କରନ୍ତୁ। ପୋଲିସ୍ ପାଖକୁ ଯିବା ଆଗରୁ ଆପଣ ମୋ ବନ୍ଧୁ ସେରଲକ୍ ହୋମ୍‌ଙ୍କ ପାଖକୁ ଯାଆନ୍ତୁ।''

''ହଁ, ମୁଁ ତାଙ୍କ କଥା ଶୁଣିଛି। ସେ ଯଦି ଏ ବିଷୟଟା ହାତକୁ ନେବେ, ମୁଁ ବିଶେଷ ଖୁସି ହେବି। ଅବଶ୍ୟ ମୋତେ ସରକାରୀ ପୋଲିସ୍‌ର ସାହାଯ୍ୟ ନେବାକୁ ପଡ଼ିବ। ଆପଣ ଦୟାକରି ହୋମ୍‌ଙ୍କ ସାଥିରେ ମୋର ପରିଚୟ କରାଇଦେଇ ପାରିବେ ?''

''ହଁ, ହଁ, ମୁଁ ନିଜେ ଆପଣଙ୍କୁ ସାଥିରେ ଧରି ତାଙ୍କ ପାଖକୁ ଯିବି।''

''ତା ହେଲେ ମୁଁ ଆପଣଙ୍କ ପାଖରେ କୃତଜ୍ଞ ରହିବି।''

''ଆମେ ଗୋଟେ ଗାଡ଼ି ଡକେଇବା, ଆଉ ସେଥିରେ ସାଥି ହୋଇ ଯିବା। ଜଳଖିଆଟା ସେଇଠି ହବ। କ'ଣ କହୁଛନ୍ତି ?''

''ହଁ, ସେଇଆ କରନ୍ତୁ। ମୋ କଥାଟା ପ୍ରକାଶ ନ କରିବାଯାଏ ମୋର ଶାନ୍ତି ନାହିଁ।''

''ମୋ ଚାକର ଗାଡ଼ି ଡାକୁଛି; ଆଉ ମୁଁ ଖୁବ୍ ଶୀଘ୍ର ବାହାରିଆସୁଛି।''

ଉପର ମହଲାକୁ ଯାଇ ମୋ ସ୍ତ୍ରୀ ଆଗରେ ସଂକ୍ଷେପରେ ସବୁ କଥା କହିଲି। ପାଞ୍ଚ ମିନିଟ୍ ଭିତରେ ଆମେ ଗୋଟେ ଘୋଡ଼ାଗାଡ଼ିରେ ବସି ବେକର୍ ଷ୍ଟ୍ରୀଟ୍ ଆଡ଼େ ଚାଲିଲୁ। ସେର୍‌ଲକ୍ ହୋମ୍ ତାଙ୍କ ବୈଠକଖାନାରେ ବସି ଟାଇମ୍‌ସ୍ ଖବରକାଗଜ ପଢ଼ୁଥିଲେ। ହାତରେ ସିଗାରେଟ୍ ପାଇପ୍। ଆମକୁ ଦେଖି ହସି ହସି ସ୍ୱାଗତ କଲେ। ତା'ପରେ ଜଳଖିଆ ପର୍ବ ଶେଷ ହେଲା। ଆମ ନୂଆ ଅତିଥିଙ୍କୁ ସୋଫା ଉପରେ ବସାଇ ଦେଇ ତାଙ୍କ ମୁଣ୍ଡ ପାଖରେ ଗୋଟେ ତକିଆ ଦେଇଦେଲେ। ତା'ପରେ ଗୋଟେ ଗ୍ଲାସ ପାଣି ଆଉ ବ୍ରାଣ୍ଡି ମିଶାଇ ତାଙ୍କ ପାଖରେ ରଖିଦେଲେ। ତା'ପରେ ସେ କହିଲେ, ''ମିଷ୍ଟର୍ ହାଥର୍‌ଲି, ଆପଣଙ୍କ ଅନୁଭୂତିଟା ଯେ ଅତି ଅସାଧାରଣ, ସେ କଥା ସହଜରେ ଜଣାଯାଉଛି। ଦୟାକରି ମନରେ କିଛି ନ ଭାବି ସେଇ ସୋଫା ଉପରେ ଶୋଇପଡ଼ନ୍ତୁ। ଯାହା କହିପାରିବେ ଆମକୁ କହନ୍ତୁ। କଷ୍ଟ ହେଲେ କହିବା ବନ୍ଦ କରିଦେବେ। ଏଇ ବ୍ରାଣ୍ଡିମିଶା ପାଣିରୁ ଟିକେ ପିଇନେବେ।''

''ଧନ୍ୟବାଦ, କିନ୍ତୁ ଡାକ୍ତର ମୋ କ୍ଷତ ବ୍ୟାଣ୍ଡେଜ୍ କରିଦେଲା ପରେ ମୋତେ ବେଶ୍ ଆରାମ ଲାଗିଲା। ଏଠି ଜଳଖିଆ ଖାଇବା ପରେ ମୁଁ ପୂରା ଭଲ ହୋଇଯାଇଛି। ଆଉ ମୋତେ କଷ୍ଟ ନାହିଁ। ଆପଣଙ୍କ ମୂଲ୍ୟବାନ୍ ସମୟ ନଷ୍ଟ ନ କରି ମୁଁ ସାଙ୍ଗେ ସାଙ୍ଗେ ମୋ ଅଦ୍ଭୁତ ଅନୁଭୂତି କଥା କହୁଛି।''

ହୋମ୍ ତାଙ୍କ ବଡ଼ ଆରାମ ଚଉକିଟାରେ ବସିଗଲେ। ମୁଁ ତାଙ୍କ ସାମନାରେ ଗୋଟେ ଚଉକିରେ ବସିଲି। ତା'ପରେ ଆଗନ୍ତୁକ ଆମ

ଆଗରେ ତାଙ୍କ ଅଦ୍‌ଭୁତ ଅନୁଭୂତି କଥା ବର୍ଣ୍ଣନାକଲେ : ''ମୁଁ ପିତାମାତାହୀନ ଆଉ ଅବିବାହିତ। ଲଣ୍ଡନରେ ଘର ଭଡ଼ା ନେଇ ଏକୁଟିଆ ରହେ। ମୋର ବ୍ୟବସାୟ ହେଲା, ମୁଁ ହାଇଡ୍ରୋଲିକ୍ ଇଞ୍ଜିନିୟର। ଗ୍ରୀନ୍‌ଉଇଚ୍‌ର ବିଖ୍ୟାତ ଭେନର-ମାଥେସନ୍ ପ୍ରତିଷ୍ଠାନରେ ସାତବର୍ଷ କାମ କରି ମୋର ବେଶ୍ ଅନୁଭୂତି ଆସିଯାଇଛି। ଦୁଇବର୍ଷ ତଳେ ମୋ ବାପା ମରିଗଲେ। ତାଙ୍କ ଉତ୍ତରାଧିକାରୀରୂପେ ମୁଁ ବେଶ୍ କିଛି ଅର୍ଥ ପାଇଲି। ତେଣୁ ଚାକିରି ଛାଡ଼ି ନିଜର ବ୍ୟବସାୟ କରିବାକୁ ଠିକ୍ କଲି। ଭିକ୍‌ଟୋରିଆ ଷ୍ଟ୍ରୀଟ୍‌ରେ ଘର ନେଇ ମୋର ବ୍ୟବସାୟ ଆରମ୍ଭ କଲି।

''ନୂଆ କରି କୌଣସି ବ୍ୟବସାୟ ଆରମ୍ଭ କଲେ, ସମସ୍ତଙ୍କୁ ଅନେକ ଅସୁବିଧାରେ ପଡ଼ିବାକୁ ହୋଇଥାଏ। ମୋ ପକ୍ଷରେ ମଧ୍ୟ ସେଇଆ ହେଲା। ଦୁଇବର୍ଷ ଭିତରେ ମୁଁ ମୋଟେ ତିନୋଟି କାମ ପାଇଲି। ମୋର ମୋଟା ରୋଜଗାର ହେଲା ସତେଇଶ ପାଉଣ୍ଡ ଦଶ ଶିଲିଂ। ପ୍ରତିଦିନ ସକାଳ ଛଅଟାରୁ ସନ୍ଧ୍ୟା ଚାରିଟାଯାଏ ମୁଁ ଖାଲି କାରଖାନାରେ ବସି ବସି ଅପେକ୍ଷା କରେ। ଶେଷରେ ମୋ ମନ ଦବିଗଲା। ଭାବିଲି, ମୋର ଏ ବ୍ୟବସାୟ ଆରମ୍ଭ କରିବାର ନ ଥିଲା।

''ଯାହାହେଉ, ଗଲାକାଲି ମୁଁ ଅଫିସ ଛାଡ଼ି ଯିବାକୁ ବାହାରୁଛି, ମୋ କିରାଣି ଆସି ଖବର ଦେଲା, ଜଣେ ଭଦ୍ରଲୋକ ବ୍ୟବସାୟ-ସଂକ୍ରାନ୍ତରେ ବାହାରେ ଅପେକ୍ଷା କରିଛନ୍ତି। ସେ ଖଣ୍ଡେ କାର୍ଡ଼ ମଧ୍ୟ ଆଣିଥିଲା। ସେଥିରେ ଲେଖାଥିଲା, କର୍ଣ୍ଣେଲ୍ ଲାଇସେଣ୍ଡର୍ ଷ୍ଟାର୍କ। କିରାଣି ପଛେ ପଛେ କର୍ଣ୍ଣେଲ୍ ନିଜେ ଆସି ମଧ୍ୟ ପହଞ୍ଚିଲେ। ସାଧାରଣ ଉଚ୍ଚତାର ଲୋକ; କିନ୍ତୁ ଦେହ ଖୁବ୍ ସରୁ। ଏତେ ପତଳା ଲୋକ କେବେ ଦେଖିଥିବା ମୋର ମନେହୁଏନା। ଗାଲର ଚମଡ଼ା ଉପରକୁ ହାଡ଼ ଫୁଟି ଦିଶୁଥାଏ। ତଥାପି ଜଣାଯାଉଥାଏ ଏଇ କ୍ଷୀଣତା ତାଙ୍କର ସ୍ୱାଭାବିକ, କୌଣସି ରୋଗଯୋଗୁଁ ନୁହେଁ। କାରଣ ତାଙ୍କ ଆଖି ଖୁବ୍ ସତେଜ, ଚାଲି ଖୁବ୍ ଚଞ୍ଚଳ। ସେ ପରିଷ୍କାର ସାଦାସିଧା ପୋଷାକ ପିନ୍ଧିଥିଲେ। ଅନୁମାନ କଲି, ତାଙ୍କ ବୟସ ଚାଳିଶ ପାଖାପାଖି ହୋଇଥିବ।

''ମୋତେ ସମ୍ବୋଧନ କରି ସେ କହିଲେ, 'ମିଷ୍ଟର୍ ହାଥରଲି!' ତାଙ୍କ କଥାରେ ଜର୍ମାନ୍ ଭାଷାର ଉଚ୍ଚାରଣର ପ୍ରଭାବ ଥିଲା। କହିଲେ,

'ମୋତେ ଆପଣଙ୍କ ନାଁ ସୁପାରିସ୍ କରାଯାଇଛି। କୁହାଯାଇଛି, ଆପଣ କେବଳ ଆପଣଙ୍କ କାମରେ ଦକ୍ଷ ନୁହନ୍ତି; ଆପଣ ଖୁବ୍ ବିବେକୀ, ଆଉ ଯେକୌଣସି କଥା ଗୁପ୍ତ ରଖିପାରିବେ।''

''ଏ ପ୍ରକାର ଖୋସାମତି ଶୁଣି ମୋ ମନରେ ଗର୍ବ ଆସିଲା। ନମ୍ରଭାବରେ କହିଲି, 'କିଏ ମୋର ଏ ପ୍ରଶଂସା କରୁଥିଲେ ଜାଣିପାରିବି କି ?'

'ବର୍ତ୍ତମାନ ସେ କଥା ନ କହିଲେ ବୋଧହୁଏ ଭଲହେବ। ସେଇଠୁ ବି ମୁଁ ଶୁଣିଲି ଆପଣ ପିତାମାତାହୀନ ଏବଂ ଅବିବାହିତ, ଆଉ ଲଣ୍ଡନରେ ଏକା ଏକା ରହୁଛନ୍ତି।'

''ମୁଁ ଉତ୍ତରଦେଲି, 'ସେକଥା ପୂରା ସତ; କିନ୍ତୁ କ୍ଷମାକରିବେ। ମୋର ବ୍ୟବସାୟ ସାଥିରେ ଏ ସବୁର କ'ଣ ସମ୍ପର୍କ ଅଛି, ମୁଁ ବୁଝିପାରୁନାହିଁ। ଆପଣ ନିଶ୍ଚୟ ବ୍ୟବସାୟ-ସଂକ୍ରାନ୍ତରେ କଥାବାର୍ତ୍ତା କରିବାକୁ ମୋ ପାଖକୁ ଆସିଛନ୍ତି।'

'ସେଥିରେ ତ ସନ୍ଦେହ ନାହିଁ। ତେବେ ଆପଣ ଦେଖିବେ ମୁଁ ଯାହା କହୁଛି, ସେସବୁ ଅପ୍ରାସଂଗିକ ନୁହେଁ। ମୁଁ ବ୍ୟବସାୟଗତ କାମରେ ଆପଣଙ୍କ ପାଖକୁ ଆସିଛି; କିନ୍ତୁ ସେଥିରେ ପୂରାପୂରି ଗୋପନୀୟତା ଦରକାର। ଆପଣ ଜାଣନ୍ତି, ଆଉ ଆମେ ମଧ ଆଶା କରୁ ଯେ ପରିବାର ନ ଥିବା ଲୋକ କଥାଟା ଗୋପନ ରଖିପାରିବ।'

''ମୁଁ ଯଦି କଥାଟା ଗୋପନ ରଖିବାକୁ ନିୟମ କରେ, ତେବେ ଆପଣ ମୋ ଉପରେ ଆସ୍ଥା ରଖିପାରନ୍ତି।'

''ସେ ମୋଆଡ଼କୁ କଟମଟ କରି ଚାହିଁଲେ। ଜଣାଗଲା, ଏମିତି ସନ୍ଦେହୀ ଆଖି ମୁଁ କେବେ ଦେଖିନାହିଁ। ଶେଷରେ ସେ କହିଲେ, 'ଆପଣ ତେବେ ନିୟମ କରୁଛନ୍ତି ?'

'ହଁ, ମୁଁ ନିୟମ କରୁଛି।'

''ଦେଖନ୍ତୁ, କାମ ପୂର୍ବରୁ, କାମ ସମୟରେ ଏବଂ କାମ ପରେ ଆପଣଙ୍କୁ ପୂରା ଚୁପ୍ ରହିବାକୁ ପଡ଼ିବ। ଘଟଣା ସମ୍ବନ୍ଧରେ କାହାକୁ କିଛି କହିବେ ନାହିଁ।'

''ମୁଁ ତ ଆପଣଙ୍କୁ ପ୍ରତିଶ୍ରୁତି ଦେଇସାରିଛି।'

''ବେଶ୍।' ହଠାତ୍ ସେ ଉଠିପଡ଼ି ବିଜୁଳି ବେଗରେ ବାରଣ୍ଡାପାଖ କବାଟ ପାଖକୁ ଯାଇ ସେଟା ଖୋଲିଦେଲେ। ବାରଣ୍ଡାରେ କେହି ନ ଥିଲା।

''ଫେରିଆସି ସେ କହିଲେ, 'ଠିକ୍ ଅଛି। ମୁଁ ଜାଣେ, କିରାଣିମାନେ ବେଳେବେଳେ ତାଙ୍କ ମାଲିକଙ୍କ କାମରେ ଆଗ୍ରହୀ ହୋଇପଡ଼ନ୍ତି। ବର୍ତ୍ତମାନ ଆମେ ପୂରା ନିରାପଦ।' ସେ ଚଉକିଟା ମୋର ଖୁବ୍ ପାଖକୁ ଟାଣିଆଣି ପୁଣି ମୋ ମୁହଁକୁ କଟମଟ କରି ଚାହିଁଲେ। ଲୋକଟାର ବିଚିତ୍ର ଢଙ୍ଗ ଦେଖି ମୋ ମନରେ ଘୃଣା ଆଉ ଭୟ ଆସିଲା। ମୁଁ ଅଧୈର୍ଯ୍ୟ ହୋଇପଡ଼ିଲି।

''ଦୟାକରି ଆପଣଙ୍କ କାମ କଥା କହନ୍ତୁ! ମୋ ସମୟର ମୂଲ୍ୟ ଅଛି।' କଥାଟା ଆପେ ଆପେ ମୋ ମୁହଁରୁ ବାହାରିଗଲା।

''ଆଚ୍ଛା, ଗୋଟାଏ ରାତିର କାମପାଇଁ ଆପଣଙ୍କୁ ଆମେ ପଚାଶ ଗିନି ଦେବୁ। କେମିତି ?'

''ଖୁବ୍ ଭଲ।''

''ମୁଁ ଗୋଟେ ରାତିର କାମ ବୋଲି କହିଲି— ପ୍ରକୃତରେ ଘଣ୍ଟାକର କାମ। ଆମର ଗୋଟେ ହାଇଡ୍ରୋଲିକ୍ ଚାପିବା ମେସିନ୍‌ର ଗିଅର୍ ଖରାପ ହୋଇଯାଇଛି। ସେ ବିଷୟରେ ଆପଣଙ୍କ ମତ ଆମର ଦରକାର। ଆପଣ ଖାଲି କ'ଣ ଖରାପ ହୋଇଛି, ଆମକୁ ଦେଖାଇଦେଲେ, ଆମେ ନିଜେ ତାକୁ ସଜାଡ଼ିନେବୁ। ଆପଣ ଏ କାମ ବିଷୟରେ କ'ଣ ଭାବୁଛନ୍ତି ?'

''ଜଣାଯାଉଛି କାମଟା ଖୁବ୍ ସହଜ। ତା ତୁଳନାରେ ପଇସାଟା ଖୁବ୍ ବେଶି।'

''ପ୍ରାୟ ସେଇଆ। ଆମେ ଚାହୁଁ ଆପଣ ଆଜି ରାତି ଶେଷ ଟ୍ରେନ୍‌ରେ ଆସିବେ।'

''କିନ୍ତୁ କେଉଁ ଜାଗାକୁ ?''

''ବର୍କସାୟାର୍‌ର ଆଏଫୋର୍ଡ଼। ଅକ୍ସଫୋର୍ଡ଼ ସାୟାର୍ ସୀମାନ୍ତରେ ଏକ ଛୋଟ ଜାଗା। ରିଡ଼ିଙ୍ଗ୍ ଷ୍ଟେସନ୍‌ରୁ ସାତ ମାଇଲ ଭିତରେ। ଆପଣ ପାଡ଼ିଙ୍ଗଟନ୍‌ରୁ ଟ୍ରେନ୍‌ରେ ଗଲେ ସେଠି ରାତି ଏଗାରଟା ପନ୍ଦର ମିନିଟରେ ପହଞ୍ଚିବେ।''

''ଠିକ୍ ଅଛି। ମୁଁ ଯିବି।'

'ମୁଁ ଗାଡ଼ିଧରି ଷ୍ଟେସନକୁ ଆସିଥିବି।'

''ସେଠିକି ତାହେଲେ ଗାଡ଼ିରାସ୍ତା ଅଛି ?'

'ହଁ, ଆମ ଜାଗାଟା ମଫସଲରେ। ଆଇଫୋର୍ଡ଼ ଷ୍ଟେସନରୁ ସାତ ମାଇଲ।'

''ତେବେ ଆମେ ତ ଅଧରାତି ପୂର୍ବରୁ ପହଞ୍ଚିପାରିବାନାହିଁ। ମୁଁ ଫେରିବା ପାଇଁ ବୋଧହୁଏ ଆଉ ଟ୍ରେନ୍ ପାଇବି ନାହିଁ। ବାଧ୍ୟ ହୋଇ ମୋତେ ରାତିରେ ସେଠି ରହିବାକୁ ପଡ଼ିବ।'

'ଆମେ ଆପଣଙ୍କୁ କମ୍ବଳ ଆଦି ଯୋଗାଇଦେବୁ।'

''ସେଟା ସୁବିଧା ହେବନାହିଁ। ଆଚ୍ଛା, ମୁଁ ଅନ୍ୟ ସୁବିଧା ସମୟରେ ଗଲେ ଚଳିବନାହିଁ ?'

'ନା, ଆପଣ ରାତିରେ ଡେରିରେ ଯିବା ଆମର ଦରକାର। ଆପଣଙ୍କର ସେ ଅସୁବିଧା ପାଇଁ ଆମେ ତ ଅଧିକ ପଇସା ଦେଉଛୁ। ଆପଣ ଯୁବକ ଆଉ ଆମର ଅଚିହ୍ନା। ତଥାପି ଜଣେ ଅଭିଜ୍ଞ ଲୋକକୁ ଆମେ ଯାହା ଫିସ୍ ଦିଅନ୍ତୁ, ତା'ଠୁ ଆପଣଙ୍କୁ ଅଧିକା ଦେଉଛୁ। ଆପଣ ଯଦି କାମଟା ଛାଡ଼ି ଦେବାକୁ ଚାହାନ୍ତି, ତେବେ ଏବେ ବି ସମୟ ଅଛି।'

''ପଚାଶ ଗିନି କଥା ଭାବି ମୁଁ କହିଲି, 'ନା, ନା, ମୁଁ କୌଣସି ପ୍ରକାରେ କାମ ଚଳାଇଦେବି। ତେବେ ଆପଣ ମୋ'ଠୁ କଣ କାମ ଚାହାନ୍ତି, ମୁଁ ସେ କଥା ଭଲରୂପେ ଜାଣିବା ଦରକାର।'

'ନିଶ୍ଚୟ, ନିଶ୍ଚୟ। ଏଟା ସ୍ୱାଭାବିକ ଯେ ଆମେ ଯେତେବେଳେ କଥାଟା ଗୁପ୍ତ ରଖିବା ପାଇଁ ଆପଣଙ୍କୁ ନିୟମ କରେଇଛୁ, ଆପଣଙ୍କ ମନରେ କୌତୂହଳ ଜାତ ହୋଇଥିବ। ତା' ଛଡ଼ା କାମଟା ବିଷୟରେ ଆପଣଙ୍କୁ ସବୁକଥା ନ କହି କାମରେ ଲଗାଇବା ମୋର ଇଚ୍ଛା ନୁହେଁ। ଆମେ ବର୍ତ୍ତମାନ ପୂରା ନିରାପଦ ତ ?'

''ହଁ, ସମ୍ପୂର୍ଣ୍ଣ – କେହି ଆସିବାର ପ୍ରଶ୍ନ ନାହିଁ।'

'ତା'ହେଲେ କଥାଟା ଶୁଣନ୍ତୁ। ଆପଣ ଜାଣିଥିବେ, ଫୁଲର ମାଟି ଖୁବ୍ ମୂଲ୍ୟବାନ୍ ଦ୍ରବ୍ୟ, ଆଉ ଇଂଲଣ୍ଡର ଗୋଟେ ଦି'ଟା ଜାଗାରେ ଏହା ମିଳେ।'

''ହଁ, ମୁଁ ଶୁଣିଛି।'

'ଖୁବ୍ ଅଳ୍ପଦିନ ତଳେ ମୁଁ ଖଣ୍ଡେ ଜମି କିଣିଲି। ଖୁବ୍ କମ୍ ଜାଗା। ରିଡ଼ିଙ୍ଗ୍ ଷ୍ଟେସନଠାରୁ ଦଶମାଇଲ ଦୂର। ଭାଗ୍ୟକୁ ମୋର ଖଣ୍ଡେ ଜମିରେ ଏଇ ମାଟି ଥିବାର ସନ୍ଧାନ ପାଇଲି। ପରୀକ୍ଷା କରି ଦେଖିଲି, ତାର ପରିମାଣ ଖୁବ୍ କମ୍, ଆଉ ତାର ଡାହାଣ ଏବଂ ବାଁ କଡ଼କୁ ଏଇ ମାଟି ପ୍ରଚୁର ପରିମାଣରେ ରହିଛି। ସେ ଜାଗା କିନ୍ତୁ ମୋର ପଡ଼ିଶାମାନଙ୍କର। ସେମାନେ କିନ୍ତୁ ଜାଣନ୍ତି ନାହିଁ ଯେ ତାଙ୍କ ଜମିରେ ସୁନାପରି ମୂଲ୍ୟବାନ୍ ଜିନିଷ ଅଛି। ତେଣୁ ସେମାନେ ସେ ଜାଗାର ମୂଲ୍ୟ ଜାଣିବା ଆଗରୁ ମୁଁ ତାଙ୍କଠୁଁ ଜାଗା କିଣିଆଣିବା ସ୍ୱାଭାବିକ; କିନ୍ତୁ ଦୁର୍ଭାଗ୍ୟକୁ ମୋ ପାଖରେ ପଇସା ନ ଥିଲା। ତେଣୁ ମୋର କେତେଜଣ ଘନିଷ୍ଠ ବନ୍ଧୁଙ୍କୁ ଏ କଥା କହିଲି। ସେମାନେ ପ୍ରସ୍ତାବ ଦେଲେ ଯେ ଆମେ ଖୁବ୍ ଗୋପନରେ ତୁମ ଜାଗାରେ କାମ ଆରମ୍ଭ କରିବା। ସେଥିରୁ ଯଥେଷ୍ଟ ପଇସା ମିଳିବ। ସେଇ ପଇସାରେ ଆମେ ଅନ୍ୟ ଜାଗା କିଣିନେଇ ପାରିବା। କେତେ ଦିନ ହେଲା ଆମେ ଏ କାମ ଆରମ୍ଭ କରିଛୁ। ଏଇ କାମ ପାଇଁ ଆମେ ଗୋଟେ ହାଇଡ୍ରୋଲିକ୍ ଚାପ ଯନ୍ତ୍ର ଲଗାଇଛୁ। ଏଇ ମେସିନ୍‌ଟା ଖରାପ ହୋଇଯାଇଛି। ସେଥିପାଇଁ ଆମେ ଆପଣଙ୍କ ଉପଦେଶ ଚାହୁଁ। ଆମେ କାମଟା ଖୁବ୍ ଗୁପ୍ତ ରଖିଛୁ। ଯଦି ଲୋକେ ଜାଣନ୍ତି ଯେ ଆମ ଛୋଟ ଘରକୁ ଜଣେ ହାଇଡ୍ରୋଲିକ୍ ଇଞ୍ଜିନିୟର ଆସିଥିଲେ, ତେବେ ସେମାନଙ୍କ ମନରେ ସନ୍ଦେହ ହେବ। ଯଦି କଥାଟା ଜଣାପଡ଼ିଯାଏ, ତେବେ ଆମର ଜାଗାକିଣା, ଭବିଷ୍ୟତ ଯୋଜନା ସବୁ ପଣ୍ଡ ହୋଇଯିବ। ସେଥିପାଇଁ ମୁଁ ଆପଣଙ୍କୁ ନିୟମ କରେଇଛି ଯେ ଆଇଫୋର୍ଡ଼ ଯାଇଥିବା କଥା କାହାକୁ କହିବେନାହିଁ। ଏଥର ବୋଧହୁଏ କଥାଟା ପରିଷ୍କାର ହେଲା ?'

''ହଁ, ବୁଝିଲି। ତେବେ ଗୋଟେ କଥା ହେଲା ଯେ ମାଟି ଖୋଳିବା ପାଇଁ ଏଇ ହାଇଡ୍ରୋଲିକ୍ ଚାପ ମେସିନ୍‌ର ଆବଶ୍ୟକତା କ'ଣ ମୁଁ ତ ବୁଝିପାରୁନାହିଁ।''

''ବେଖାତିର ଭାବରେ ସେ କହିଲେ, ଆମେ ଆମ ହିସାବରେ କାମ କରୁଛୁ। ଆମେ ସେ ମାଟିକୁ ଚାପି ଇଟାପରି କରି ଦେଉଛୁ।

ତେଣୁ ସେଟା ପ୍ରକୃତରେ କି ଜିନିଷ, କେହି ଜାଣିପାରିବେ ନାହିଁ। ସେ ସବୁ ଟିକିନିଖି କଥା ଦରକାର ନାହିଁ। ମୁଁ ଆପଣଙ୍କୁ ବିଶ୍ୱାସ କରୁଛି ମିଷ୍ଟର୍ ହାଥର୍ଲି! ଆଇଫୋର୍ଡଠାରେ ଏଗାରଟା ପନ୍ଦର ମିନିଟବେଳେ ପୁଣି ଆପଣଙ୍କୁ ଭେଟିବାର ଆଶା।' ଏହା କହୁ କହୁ ସେ ଉଠି ଠିଆହେଲେ।

''ମୁଁ ନିଶ୍ଚୟ ପହଞ୍ଚିବି।'

'କାହାକୁ କିଛି ପଦେହେଲେ କହିବେନାହିଁ।' ମୋ ମୁହଁକୁ ପୁଣି ଥରେ ଚାହିଁ ସେ ଖୁବ୍ ତରତରରେ ଘରୁ ବାହାରିଗଲେ।

''ତା'ପରେ ମୁଁ ସ୍ଥିରଭାବରେ କଥାଟା ଚିନ୍ତା କଲି। ହଠାତ୍ ମୋତେ ଏ ଯେଉଁ କାମ ମିଳିଗଲା, ସେଥିରେ ମୁଁ ବିସ୍ମିତ ହୋଇଗଲି। ଏକପକ୍ଷରେ ମୁଁ ଖୁବ୍ ଖୁସି ହେଲି; କାରଣ ଫିସ୍‌ଟା ହେଲା ମୁଁ ଯାହା କହିଥାନ୍ତି, ତାର ଅନ୍ତତଃ ଖୁବ୍ କମ୍‌ରେ ଦଶଗୁଣ। ତା'ଛଡ଼ା ଏଇ କାମଯୋଗୁଁ ପରେ ମୋତେ ଆଉ କାମ ବି ମିଳିପାରେ। ଅନ୍ୟପକ୍ଷରେ ମୋ ଗ୍ରାହକଙ୍କର ମୁହଁ ଆଉ ଢଙ୍ଗଢାଙ୍ଗ କେମିତି ଅଡୁଆ ଅଡୁଆ ଲାଗିଲା। ସେ ଯାହା କହିଲେ, ସେଥିରେ ରାତିଅଧରେ ମୋର ସେଠିକି ଯିବାଟା ଦରକାର ବୋଲି ମୋର ମନେହେଲାନାହିଁ। ବିଶେଷତଃ ମୁଁ ଏ କଥା କାହାକୁ ନ କହିବାପାଇଁ ତାଙ୍କର ଉଦ୍‌ବେଗ ମୋ ମନରେ ସନ୍ଦେହ ଆଣିଲା। ଯାହାହେଉ, ସବୁ ଭୟ ଫିଙ୍ଗିଦେଇ ମୁଁ ଖିଆପିଆ ସାରି ପାଡ଼ିଙ୍ଗ୍ ଟନ୍ ବାହାରିଲି। ସେଠୁ ଟ୍ରେନ୍ ଧରିଲି। ତାଙ୍କ କଥା ମନେରଖି କାହାକୁ କିଛି କହୁ ନ ଥାଏ।

''ରିଡ଼ିଙ୍ଗ୍‌ରେ ମୋତେ ଗାଡ଼ି ବଦଳାଇବାକୁ ପଡ଼ିଲା। ଯୋଗକୁ ଆଇଫୋର୍ଡ଼ ଯିବାପାଇଁ ଶେଷ ଟ୍ରେନ୍‌ଟା ପାଇଗଲି। ସେଇ ଛୋଟ ଷ୍ଟେସନରେ ଠିକ୍ ଏଗାରଟାବେଳେ ପହଞ୍ଚିଲି। ମୁଁ ଏକା ସେଠି ଓହ୍ଲାଇଲି। ପ୍ଲାଟଫର୍ମରେ ଜଣେ କୁଲି ଛଡ଼ା ଆଉ କେହି ନାହିଁ। ତା ହାତରେ ଗୋଟେ ଲଣ୍ଠନ। ନିଦରୁ ଉଠିଲାପରି ଜଣାଯାଉଥାଏ। କାଠ ଗେଟ୍ ଦେଇ ମୁଁ ବାହାରିଗଲାବେଳେ ଦେଖିଲି ସକାଳର ସେଇ ପରିଚିତ ଲୋକ ଆରପାଖେ ଅନ୍ଧାରରେ ଠିଆହୋଇଛନ୍ତି। କିଛି ପାଟି ନ ଫିଟାଇ ସେ ମୋ ହାତ ଧରି ଗୋଟେ ଗାଡ଼ି ଭିତରକୁ ନେଇଗଲେ। ସେ ଦୁଇପାଖର ଝରକା ବନ୍ଦ କରିଦେଇ ଠକ୍ ଠକ୍ ଶବ୍ଦ କଲେ। ଘୋଡ଼ାଟା ଯେତେ ଜୋର୍‌ରେ ପାରେ ଦୌଡ଼ି ଚାଲିଲା।''

''ଗୋଟେ ଘୋଡ଼ା ?'' ସେରଲକ୍ ହୋମ୍ ପଚାରିଲେ।

''ହଁ, ଗୋଟେ ମାତ୍ର।''

''ଆପଣ ତା ରଙ୍ଗଟା ଲକ୍ଷ୍ୟ କରିଛନ୍ତି ?''

''ହଁ, ଗାଡ଼ିରେ ଚଢ଼ିଲାବେଳେ ମୁଁ ତାକୁ ଦେଖିଛି। ରଙ୍ଗଟା ବାଦାମୀ।''

''ଘୋଡ଼ାଟା ସତେଜ ନା କ୍ଲାନ୍ତ ଜଣାଯାଉଥିଲା ?''

''ଖୁବ୍ ସତେଜ ଆଉ ଚିକ୍‌କଣ।''

''ଧନ୍ୟବାଦ। କଥା ମଝିରେ ଟିକିଏ ଗୋଳମାଳ କରିଦେଲି। ହଉ, ଏଥର ଆପଣଙ୍କ କଥା କହନ୍ତୁ।''

''ପ୍ରାୟ ଘଣ୍ଟାଏ ଯାଏ ଆମେ ସେମିତି ଗାଡ଼ିରେ ବସି ଚାଲିଲୁ। କର୍ଣ୍ଣେଲ୍ ଲାଇସେଣ୍ଡର୍ କହିଥିଲେ ଷ୍ଟେସନଠୁ ଜାଗାଟା ସାତ ମାଇଲ ଦୂର। କିନ୍ତୁ ଗାଡ଼ିର ବେଗ ଆଉ ସମୟରୁ ମୁଁ ଅନୁମାନ କରୁଛି ଦୂରତା ବାର ମାଇଲରୁ କମ୍ ହେବ ନାହିଁ। ସେ ମୋ ପାଖରେ ଚୁପ୍ ହୋଇ ବସିଥାନ୍ତି। ତାଙ୍କ ଆଡ଼କୁ ମଝିରେ ମଝିରେ ମୁଁ ଚାହୁଁଥାଏ। ଜାଣିପାରିଲି, ସେ ଏକଲୟରେ ମୋ ଆଡ଼େ ଚାହିଁଛନ୍ତି। ସେ ଅଞ୍ଚଳର ରାସ୍ତାଟା ସେତେ ଭଲ ନୁହେଁ। ଆମ ଗାଡ଼ି ଭାରି ଧକଡ଼ଚକଡ଼ ହେଉଥାଏ। ଆମେ କେଉଁ ଜାଗାରେ ବୋଲି ଜାଣିବାକୁ ମୁଁ ଝରକାବାଟେ ପଦାକୁ ଚାହିଁବାକୁ ଚେଷ୍ଟା କଲି, କିନ୍ତୁ ଝରକାର କାଚଗୁଡ଼ାକରେ କୁହୁଡ଼ି ପରି ରଙ୍ଗ ଦିଆଯାଇଥିଲା। ଚୁପ୍ ହୋଇ ବସି ବିରକ୍ତ ଲାଗୁଥାଏ; ତେଣୁ ମଝିରେ ମଝିରେ ମୁଁ ପଦେଅଧେ କଥା କହୁଥାଏ। କର୍ଣ୍ଣେଲ୍ କିନ୍ତୁ ନିଜକୁ ନିଜେ କହିଲା ପରି ଖୁବ୍ ଆସ୍ତେ ଉତ୍ତର ଦେଉଥାନ୍ତି। ତେଣୁ କଥାବାର୍ତ୍ତା ବି ବନ୍ଦ ହୋଇଗଲା। ଶେଷରେ ଆବଡ଼ାଖାବଡ଼ା ରାସ୍ତା ଛାଡ଼ି ଗାଡ଼ି ସରଳ ପକ୍‌କା ରାସ୍ତାରେ ପହଞ୍ଚିଲା, ଆଉ ଗୋଟାଏ ଜାଗାରେ ଠିଆହେଲା। କର୍ଣ୍ଣେଲ୍ ଲାଇସେଣ୍ଡର୍ ଗାଡ଼ିରୁ ଡେଇଁପଡ଼ିଲେ। ତାଙ୍କ ପଛେ ପଛେ ମୁଁ ଓହ୍ଲାଇବାମାତ୍ରେ ମୋ ହାତ ଧରି ଆମ ଆଗରେ ଥିବା ଗୋଟେ ଫାଟକ ଆଡ଼କୁ ଟାଣିନେଲେ। ଆମେ ଗାଡ଼ିରୁ ଓହ୍ଲାଇ ଗୋଟେ ହଲ୍ ଘର ଭିତରେ ପାଦ ପକେଇଲୁ। ତେଣୁ ଘରର ସାମନାଟା ଦେଖିବାକୁ ମୁଁ ସୁବିଧା ପାଇଲି ନାହିଁ। ମୁଁ ଦ୍ୱାରବନ୍ଧ ପାରିହେବାମାତ୍ରେ ଆମ ପଛରେ କବାଟଟା ଧଡ଼୍‌କରି ବନ୍ଦ ହୋଇଗଲା।

''ଘର ଭିତରେ ଚିଁଟିମିଟିଆ ଅନ୍ଧାର। କର୍ଣ୍ଣେଲ୍ କ'ଣ ଖୁଣ୍ଟୁଖାଣ୍ଟୁ ହୋଇ ଦିଆସିଲି ଦରାଣ୍ଡିବାରେ ଲାଗିଲେ। ହଠାତ୍ ଆରପାଖର ଗୋଟେ ଦରଜା ଖୋଲିଗଲା, ଆଉ ଆମ ଆଡ଼କୁ ଗୋଟାଏ ଧାର ଆଲୁଅ ଆସିଲା।

ଆସ୍ତେ ଆଲୁଅଟା ବେଶି ହେଲା। ଜଣେ ସ୍ତ୍ରୀ ଲୋକ ହାତରେ ଗୋଟେ ଲ୍ୟାମ୍ପ୍ ଧରି ଆସିଲା। ହାତଟା ସେ ମୁଣ୍ଡ ପାଖକୁ ଟେକି ଧରିଥାଏ। ଆମ ଆଡ଼କୁ ମୁହଁ ଲମ୍ବେଇ ଚାହିଁଲା। ଦେଖିଲି ସେ ବେଶ୍ ସୁନ୍ଦରୀ। ତା ପୋଷାକରେ ଆଲୁଅ ପଡ଼ି ଚକ୍‌ଚକ୍ କରୁଥାଏ। ସେ ଗୋଟେ ବିଦେଶୀ ଭାଷାରେ ପ୍ରଶ୍ନ ପଚାରିବାପରି କ'ଣ କହିଲା। ମୋ ସାଥୀ ଖୁବ୍ ଆସ୍ତେ ଅଥଚ ରୁକ୍ଷ ଭାଷାରେ କଣ ଉତ୍ତର ଦେଲେ। ସେ ଏମିତି ଚମକି ପଡ଼ିଲେ ଯେ ଲ୍ୟାମ୍ପଟା ପ୍ରାୟ ତାଙ୍କ ହାତରୁ ପଡ଼ିଯିବାପରି ହେଲା। କର୍ଣ୍ଣେଲ୍ ଷ୍ଟାର୍କ ତାଙ୍କ ପାଖକୁ ଯାଇ ଚୁପ୍‌ଚୁପ୍ କରି ତାଙ୍କ କାନରେ କ'ଣ କହିଲେ। ତା'ପରେ ସେ ଯେଉଁ ଘରୁ ଆସିଥିଲେ, ତାଙ୍କୁ ସେଇ ଘର ଭିତରକୁ ନେଇଗଲେ। ସେଇଠୁ ଲ୍ୟାମ୍ପଟା ହାତରେ ଧରି ସେ ମୋ ପାଖକୁ ଫେରିଆସିଲେ।

"ଆଉ ଗୋଟେ ଘରର ଦରଜା ଖୋଲି ସେ କହିଲେ, 'ଦୟାକରି ଏଇଠି କେତେ ମିନିଟ୍ ମାତ୍ର ଅପେକ୍ଷା କରନ୍ତୁ।' ଘରଟି ଛୋଟ ଆଉ ନୀରବ। ଘର ମଝିରେ ଗୋଟେ ଗୋଲ ଟେବୁଲ୍। ତା'ଉପରେ କେତେ ଖଣ୍ଡ ଜର୍ମାନ୍ ବହି ଖେଳେଇ ହୋଇ ପଡ଼ିଥିଲା। ଦରଜା ପାଖରେ ଗୋଟେ ହାର୍‌ମୋନିଅମ୍। କର୍ଣ୍ଣେଲ୍ ଷ୍ଟାର୍କ ତା ଉପରେ ଲ୍ୟାମ୍ପଟା ରଖିଦେଇ କହିଲେ, 'ଆପଣଙ୍କୁ ବେଶୀ ସମୟ ଅପେକ୍ଷା କରିବାକୁ ପଡ଼ିବ ନାହିଁ।' ତା'ପରେ ସେ ଅନ୍ଧାର ଭିତରେ ଉଭେଇଗଲେ।

"ମୁଁ ଟେବୁଲ୍ ଉପରେ ଥିବା ବହିଆଡ଼େ ଚାହିଁଲି। ଜର୍ମାନ୍ ଭାଷା ଜାଣି ନ ଥିଲେ ମଧ୍ୟ ମୁଁ ବୁଝିଲି ସେଥିରୁ ଦୁଇଖଣ୍ଡ ବିଜ୍ଞାନ ବହି, ଆଉ ସବୁ କବିତା ବହି। ତା'ପରେ ମୁଁ ଝରକା ପାଖକୁ ଗଲି। ଭାବିଲି, କାଳେ ବାହାରର କିଛି ଦେଖିପାରିବି। କିନ୍ତୁ ଓକ୍ କାଠର କବାଟଗୁଡ଼ା ଖୁବ୍ ଦୃଢ଼ଭାବରେ ବନ୍ଦ ହୋଇଥିଲା। ଘରଟା ଅଦ୍ଭୁତରୂପେ ନିଃଶବ୍ଦ। କେଉଁଠି ଗୋଟେ ପୁରୁଣା ଘଣ୍ଟା ଟିକ୍ ଟିକ୍ କରୁଥାଏ; ତା'ଛଡ଼ା ଆଉ ସବୁ ମଲାପରି ନୀରବ। ମତେ କେମିତି ଖରାପ ଲାଗିଲା। ଏଇ ଜର୍ମାନ୍ ଲୋକେ କିଏ, ଏଇ ଅଦ୍ଭୁତ ସ୍ଥାନରେ ସେମାନେ କ'ଣ କରୁଛନ୍ତି? ଏଟା କେଉଁ ଜାଗା? ମୁଁ କେବଳ ଜାଣେ ଯେ ମୁଁ ଆଏଫୋର୍ଡ଼ଠାରୁ ଦଶ ବାର ମାଇଲ ଦୂରରେ; କିନ୍ତୁ ଆଏଫୋର୍ଡ଼ର କେଉଁ ଦିଗରେ, ମୋର କିଛି ଧାରଣା ନ ଥିଲା।

ବୋଧହୁଏ ରିଡ଼ିଙ୍ଗ୍ ଆଉ ଅନ୍ୟ ବଡ଼ ସହର ଏଇ ଦଶ ବାର ମାଇଲ ଭିତରେ। ତେଣୁ ଜାଗାଟା ନିହାତି ନିକାଞ୍ଚନ ନୁହେଁ ବୋଲି ମନେହେଲା। ତେବେ ପୂରା ନୀରବତାରୁ ଜାଣିଲି ଯେ ଜାଗାଟା ମଫସଲ। ମନକୁ ଟାଣ କରିବା ପାଇଁ ମୁଁ ଗୁଣୁଗୁଣୁ ହୋଇ ଘର ଏପଟ ସେପଟ ବୁଲିଲି।

''ହଠାତ୍ ମୋ କୋଠରିର କବାଟ ନିଃଶବ୍ଦରେ ଧୀରେ ଧୀରେ ଖୋଲିଗଲା। ଦରଜା ପାଙ୍କରେ ସେଇ ନାରୀ ଠିଆହୋଇଥିଲେ। ତାଙ୍କ ପଛରେ ହଲ୍‌ଟା ପୂରା ଅନ୍ଧାର। ଲ୍ୟାମ୍ପର ହଳଦିଆ ଆଲୁଅ ତାଙ୍କ ମୁହଁରେ ପଡ଼ିଲା। ଦେଖିଲି, ସେ ଭୟରେ କାତର ହୋଇପଡ଼ିଛନ୍ତି। ତା' ଦେଖି ମୋ ଛାତି ମଧ୍ୟ ଥରିଉଠିଲା। ଥରିଲା ଆଙ୍ଗୁଠିରେ ଠାରି ସେ ମତେ ଚୁପ୍ ରହିବାକୁ ସତର୍କ କରିଦେଲେ। ଦରଖଣ୍ଡିଆ ଇଂରାଜୀରେ ସେ କେତେ କଥା କହିଲେ। କହିଲାବେଳେ ବରାବର ପଛପାଖ ଅନ୍ଧାରକୁ ଚାହୁଁଥାନ୍ତି।

''ଆସ୍ତେ ଆସ୍ତେ କହିବାପାଇଁ ଖୁବ୍ ଚେଷ୍ଟାକରି ସେ କହିଲେ, 'ତୁମେ ଚାଲିଯାଅ। ଏଠି ରହନାହିଁ। ତୁମର ଏଠି କିଛି କରିବାର ନାହିଁ।' ମୁଁ ଉତ୍ତର ଦେଲି, 'କିନ୍ତୁ ମୁଁ ଯେଉଁଥିଲାଗି ଆସିଛି, ସେ କାମ ଏ ଯାଏ କରିନାହିଁ। ମେସିନ୍‌ଟା ଦେଖିବା ଆଗରୁ ମୁଁ ସମ୍ଭବତଃ ଯାଇପାରିବି ନାହିଁ।'

''ସେ କହିଚାଲିଲେ, 'ଏଠି ତୁମେ ଅପେକ୍ଷା କରିବା ଠିକ୍ ହେବନାହିଁ। ଏଇ ଦରଜାବାଟେ ତୁମେ ଚାଲିଯାଇପାରିବ। ବାଧାଦେବାକୁ କେହି ନାହିଁ।' ମୁଁ ହସି ହସି ମୁଣ୍ଡ ହଲାଇବାର ଦେଖି ସେ ପାହୁଣ୍ଡେ ଆଗେଇ ଆସିଲେ। ହାତ ଦୁଇଟା ଯୋଡ଼ି ଖୁବ୍ ଆସ୍ତେ କହିଲେ, 'ଭଗବାନଙ୍କ ରାଣ। ବେଶି ଡେରି ହେବା ଆଗରୁ ଏଠୁ ଚାଲିଯାଆନ୍ତୁ।'

''କିନ୍ତୁ ମୁଁ ବଡ଼ ଏକଜିଦିଆ ଲୋକ। ଯେଉଁ କାମରେ କିଛି ବାଧାବିଘ୍ନ ଥିବ, ସେଟା କରିବାକୁ ମୁଁ ସବୁବେଳେ ତିଆର। ମୁଁ ପଚାଶ ଗିନି ଫିସ୍ କଥା, କଷ୍ଟକର ରେଳଯାତ୍ରା କଥା, ଆଉ ସେ ଅସୁଖକର ରାତି କଥା ଭାବିଲି। ଏସବୁ କ'ଣ ତୁଚ୍ଛାରେ ଚାଲିଯିବ? ମୁଁ ମୋ କାମ ନକରି, ଆଉ ମୋର ଫିସ୍ ନ ନେଇ କାହିଁକି ଚାଲିଯିବି? ଏଇ ନାରୀ ହୁଏତ ପାଗଳୀ ହୋଇଥାଇପାରେ। ତେଣୁ ତାଙ୍କ ଢଙ୍ଗ ଦେଖି ମୋ ଛାତି ଥରିଉଠିଲେ ମଧ୍ୟ ଖୁବ୍ ସାହସର ସହିତ ମୁଣ୍ଡ ହଲାଇଲି, ଆଉ ସେଠି ରହିବା ମୋ ଉଦ୍ଦେଶ୍ୟ ବୋଲି ଜଣାଇଦେଲି। ସେ ପୁଣି କ'ଣ କହିବାକୁ ଗଲାବେଳକୁ

ଉପରେ ଗୋଟେ ଦରଜା ବନ୍ଦ ହେଲା; ଆଉ ପାହାଚ ଉପରେ କେତେଗୁଡ଼େ ପାଦଶବ୍ଦ ଶୁଣାଗଲା। ସେ କିଛିକ୍ଷଣ କାନଡେରି ବ୍ୟଥିତ ହୋଇ ଉପରକୁ ହାତ ଉଠାଇଲେ। ତାପରେ ହଠାତ୍ ନିଃଶବ୍ଦରେ ଉଭେଇଗଲେ।

''କର୍ଣ୍ଣେଲ୍ ଷ୍ଟାର୍କ ଏବଂ ଆଉ ଜଣେ ଗେଡ଼ା ମୋଟା ଲୋକ ଘରଭିତରକୁ ଆସିଲେ। କର୍ଣ୍ଣେଲ୍ ତାଙ୍କର ପରିଚୟ ଦେଇ କହିଲେ, 'ଏ ହେଲେ ମୋ ସେକ୍ରେଟେରୀ ଆଉ ମ୍ୟାନେଜର ମିଷ୍ଟର୍ ଫର୍ଗୁସନ। ଆଚ୍ଛା, ମୋର ମନେହେଉଛି ମୁଁ ଏ ଦରଜାଟା ବନ୍ଦକରି ଯାଇଥିଲି। ଥଣ୍ଡା ପବନଟା ଆପଣଙ୍କୁ ଖରାପ ଲାଗୁଥିବ।'

''ମୁଁ ଉତ୍ତର ଦେଲି, 'ନା, ଘରଟା ମୋତେ ଟିକିଏ ଖରାପ ଲାଗିଲା। ତେଣୁ ଦରଜାଟା ମୁଁ ନିଜେ ଖୋଲିଦେଇଛି।'

''ସେ ତାଙ୍କର ସନ୍ଦେହୀ ଆଖିରେ ଥରେ ମୋ ଆଡ଼କୁ ଚାହିଁଲେ। ତା'ପରେ କହିଲେ, 'ଏଥର ଆମେ କାମ ଉପରକୁ ଗଲେ ଭଲହେବ ମିଷ୍ଟର୍ ଫର୍ଗୁସନ୍, ଆଉ ମୁଁ ଆପଣଙ୍କୁ ଉପରକୁ ନେଇଯିବି। ଆପଣ ମେସିନ୍‌ଟା ଦେଖିବେ।'

''ତା ହେଲେ ମୁଁ ମୋ ଟୋପିଟା ପିନ୍ଧିନେଲେ ଭଲ ହେବ।'

''ନା, ଦର୍କାର ନାହିଁ। ମେସିନ୍‌ଟା ଘର ଭିତରେ ଅଛି।'

''କ'ଣ ? ଆପଣ ତେବେ ଘରଭିତରେ ଏ ମାଟି ଖୋଳୁଛନ୍ତି ?'

''ନା, ନା, ଆମେ ଏଠି ମାଟିଟାରେ ଚାପ ଦେଉ। ସେ କଥା ଭାବନ୍ତୁ ନାହିଁ। ଆମେ ଚାହୁଁ ଆପଣ ମେସିନ୍‌ଟା ପରୀକ୍ଷାକରି କ'ଣ ଖରାପ ହୋଇଛି ଆମକୁ ଜଣେଇଦିଅନ୍ତୁ।'

''ଆମେ ସାଥିହୋଇ ଉପରମହଲାକୁ ଗଲୁ। କର୍ଣ୍ଣେଲ୍ ହାତରେ ଲ୍ୟାମ୍ପ୍ ଧରି ଆଗରେ ଚାଲିଲେ। ତାଙ୍କ ପଛରେ ମୁଁ ଆଉ ସେ ମୋଟା ମ୍ୟାନେଜର। ଘରଟା ଗୋଲକଧନ୍ଦା ପରି ଏକ ପୁରୁଣାକାଳିଆ ଘର। ଘରସାରା ଅନେକ ଗଳିବାଟ, ଚଉଡ଼ାବାଟ, ଅଣଓସାରିଆ ଗୋଲେଇ ପାହାଚ ଆଉ ଅନ୍ଧ ଛୋଟ ଦରଜା। ତଳମହଲାରେ ଗାଲିଚା ବା ସାଜସରଂଜାମର ଚିହ୍ନ ନାହିଁ। କାନ୍ଥରୁ ପଲସ୍ତରା ଝଡ଼ିପଡୁଛି। ଠାଏ ଠାଏ ନେଳି ପଡ଼ିଗଲାଣି। ମୁଁ ସେ ଆଡ଼କୁ ନଜର ନ ଦେବା ପରି ଦେଖେଇବାକୁ ଚେଷ୍ଟା କରୁଥାଏ। କିନ୍ତୁ ସେଇ ନାରୀଙ୍କର ସତର୍କବାଣୀ ମାନି ନ ଥିଲେ ମଧ୍ୟ ମୁଁ ଭୁଲି ନ ଥାଏ।

ମୋ ସାଥୀ ଦୁଇଜଣଙ୍କ ଉପରେ ସତର୍କ ଦୃଷ୍ଟି ରଖିଥାଏ। ଫର୍ଗୁସନ୍ ଖୁବ୍ ରୁକ୍ଷ ଜଣାଯାଉଥାନ୍ତି; କିନ୍ତୁ ସେ ଯେଉଁ କେତେ ପଦ କଥା କହିଲେ ସେଥିରୁ ମୁଁ ଜାଣିଲି ଯେ ସେ ଅନ୍ତତଃ ଆମ ଦେଶର ଲୋକ।

''ଶେଷରେ କର୍ଣ୍ଣେଲ୍ ଲାଇସେଣ୍ଡର ଗୋଟେ ଅଳ୍ପ ଉଚ୍ଚ ଦରଜା ପାଖରେ ଠିଆହେଲେ ଏବଂ ତାଲା ଖୋଲିଲେ। ଭିତରେ ଗୋଟିଏ ଛୋଟ ବର୍ଗାକାର କୋଠରି। ଏତେ ଛୋଟ ଯେ ତିନି ଜଣ ଏକାବେଳେ ତା ଭିତରେ ରହିପାରିବେ ନାହିଁ। ଫର୍ଗୁସନ୍ ବାହାରେ ରହିଲେ। କର୍ଣ୍ଣେଲ୍ ମୋତେ ଭିତରକୁ ଡାକିଲେ।

''ଆମେ ବର୍ତ୍ତମାନ ହାଇଡ୍ରୋଲିକ୍ ମେସିନ୍ ଭିତରେ। ଯଦି କେହି ସୁଇଚ୍ ଦେଇଦିଏ, ଆମେ ବଡ଼ ବିପଦରେ ପଡ଼ିଯିବା। ଏଇ ଛୋଟ ଘରର ଛାତଟା ପ୍ରକୃତରେ ମେସିନ୍ ତଳକୁ ଖସିବା ପିଷ୍ଟନ୍। ଏଇଟା ଶହ ଶହ ଟନ୍ ଓଜନର ଶକ୍ତି ନେଇ ତଳକୁ ଏଇ ଲୁହା ଚଟାଣ ଉପରକୁ ଖସେ। ମେସିନ୍‌ଟା ଖୁବ୍ ଦ୍ରୁତଗତିରେ କାମ କରେ। କିନ୍ତୁ ଏବେ ସେଟା କାହିଁକି ଜାମ୍ ହୋଇଯାଇଛି; ତେଣୁ ତାର ଶକ୍ତି କମିଯାଇଛି। ଆପଣ ମେସିନ୍‌ଟା ଦେଖି କେମିତି ଠିକ୍ କରାଯିବ ଆମକୁ କୁହନ୍ତୁ।'

''ମୁଁ ତାଙ୍କ ହାତରୁ ଲ୍ୟାମ୍ପଟା ନେଇ ମେସିନ୍‌ଟା ଭଲଭାବେ ଦେଖିନେଲି। ପ୍ରକୃତରେ ଗୋଟେ ଶକ୍ତିଶାଳୀ ମେସିନ୍, ଆଉ ଯଥେଷ୍ଟ ଚାପ ପକାଇପାରିବ। ମୁଁ ମେସିନ୍ ବାହାର ପାଖକୁ ଯାଇ ଲିଭରଟାକୁ ତଳକୁ ଚାପିଦେଲି। ଶବ୍ଦଟାରୁ ଜାଣିପାରିଲି ଯେ ଗୋଟେ ପାଇପ୍‌ରେ ଖୁବ୍ ଛୋଟ କଣା ହୋଇଯାଇଛି। ସେଟା କେମିତି ଠିକ୍ କରାଯିବ, ତାଙ୍କୁ ବୁଝାଇଦେଇ ମୁଁ ପୁଣି ଭିତରକୁ ଆସିଲି। ଚାରିଆଡ଼ ଭଲଭାବେ ଦେଖି ଜାଣିପାରିଲି ଫୁଲର୍‌ମାଟି କଥାଟା ପୂରା ମିଛ। କାରଣ ଏତେ ଛୋଟ କାମ ପାଇଁ ଏତେ ବଡ଼ ଶକ୍ତିଶାଳୀ ମେସିନ୍ ବ୍ୟବହାର କରିବା ଦର୍କାର ନୁହେଁ। ସେ କୋଠରିର କାନ୍ଥଗୁଡ଼ା ପଟାର; କିନ୍ତୁ ମେଜିଆ ଲୁହାର। ଦେଖିଲି ଚଟାଣ ଉପରେ ଗୁଡ଼ାଏ ଧାତୁ ଜିନିଷ ପଡ଼ିଛି। ସେଗୁଡ଼ା ଠିକ୍ କ'ଣ ଦେଖିବା ପାଇଁ ମୁଁ ଭାବୁଛି, ଏତିକିବେଳେ ଜର୍ମାନ୍ ଭାଷାରେ ଚିତ୍କାର ଶୁଣିଲି। ଦେଖିଲି, କର୍ଣ୍ଣେଲ୍ କଟମଟ କରି ମୋ ଆଡ଼େ ଚାହିଁଛନ୍ତି।

''ସେଇଠି କ'ଣ କରୁଛ?' ସେ ପଚାରିଲେ।

''ରାଗରେ ମୋ ମୁହଁରୁ ବାହାରିଗଲା, 'ଆପଣଙ୍କ ଫୁଲର୍‌ମାଟିର ଡାଗିପ୍ କରୁଛି। ଆପଣଙ୍କ ଏ ମେସିନ୍ ପ୍ରକୃତରେ କି ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଛି ଜାଣିଲେ, ମୁଁ ଆପଣଙ୍କୁ ତା ବିଷୟରେ ଭଲ ବତାଇପାରିବି।''

''କଥାଟା ରାଗରେ କହିଦେଲି ସିନା, ସାଙ୍ଗେ ସାଙ୍ଗେ ଭୁଲ୍‌ଟା ବୁଝିପାରିଲି। ମୋ କଥାରେ କର୍ଣ୍ଣେଲ୍‌ଙ୍କ ମୁହଁ ରାଗରେ ପାଚିଗଲା, ଆଖି ଦୁଇଟା ଜଳିଉଠିଲା।

''ଠିକ୍ ଅଛି। ତୁମେ ସେ ମେସିନ୍ ବିଷୟରେ ସବୁ କଥା ଜାଣିପାରିବ।'

''ସେ ପଛକୁ ଘୁଞ୍ଚିଯାଇ ଦରଜାଟା ବନ୍ଦକରି ଚାବିଟା ମୋଡ଼ିଦେଲେ। ମୁଁ ଧାଇଁ ଯାଇ କବାଟଟା ଖୋଲିବାକୁ ଧକ୍‌କା ଓ ଗୋଇଠା ମାରିଲି; କିନ୍ତୁ ସେଟା ଖୋଲିଲା ନାହିଁ। ପାଟିକରି ଡାକ ଛାଡ଼ିଲି; କିନ୍ତୁ ବୃଥା।

''ହଠାତ୍ ମେସିନ୍ ଚାଲିବାର ଶବ୍ଦ ଶୁଣିପାରିଲି। ଲ୍ୟାମ୍ପ ଆଲୁଅରେ ଦେଖିଲି କଳା ଛାତଟା ଧୀରେ ଧୀରେ ତଳକୁ ଖସିଆସୁଛି। ମେସିନ୍‌ଟାର ଶକ୍ତି ମତେ ଜଣା। ମିନିଟ୍‌କରେ ମତେ ଚାପି ଗୁଣ୍ଡ କରିଦେବ। ଦରଜା ପାଖରେ ଠିଆହୋଇ କେତେ ଚିତ୍କାର କଲି, କର୍ଣ୍ଣେଲ୍‌ଙ୍କୁ ଡାକ ଛାଡ଼ିଲି। କିନ୍ତୁ ମେସିନ୍‌ର ଗର୍ଜନ ଭିତରେ ମୋ ଚିତ୍କାର ମିଳାଇଗଲା। ଛାତଟା ମୋ ମୁଣ୍ଡ ଉପରୁ ଆଉ ମୋଟେ ଦୁଇ ଫୁଟ ଉପରେ। ମୁଁ ଠିଆହୋଇଥାଏ। ଭାବିଲି ମରିବାଟା ନିଶ୍ଚୟ। ତେବେ କେମିତି ମଲେ କଷ୍ଟଟା କମ୍ ହେବ। ମୁହଁମାଡ଼ି ଶୋଇପଡ଼ିଲେ ଚାପଟା ମୋ ପିଠି ଉପରେ ପଡ଼ିବ, ଆଉ କଷ୍ଟଟା ବେଶି ହେବ। କିନ୍ତୁ ଚିତ୍ ହୋଇ ଶୋଇରହି ସେ ଭୟଙ୍କର ଛାତଟା ଉପରକୁ ମାଡ଼ିଆସିବାର ଦେଖିବାର ସାହସ ମୋର ନ ଥିଲା। ମୁଁ ଆଉ ସିଧା ହୋଇ ଠିଆହୋଇ ପାରିଲି ନାହିଁ। ଏତିକିବେଳେ ଆଖିରେ ଗୋଟାଏ ଜିନିଷ ପଡ଼ିଲା। ମନରେ କ୍ଷୀଣ ଆଶା ଆସିଲା।

''ଆଗରୁ ତ କହିଛି, କୋଠରିଟାର ଛାତ ଆଉ ମେଜିଆ ଲୁହାର; କିନ୍ତୁ କାନ୍ଥ କାଠର। ମୁଁ ତରତରରେ ଶେଷଥର ପାଇଁ ଚାରିଆଡ଼କୁ ଚାହିଁ ଚାହିଁ ଦେଖିଲି, ଦୁଇଖଣ୍ଡ ପଟା ମଝିରେ ସରୁ ଆଲୁଅଧାରଟିଏ ଘରକୁ ଆସୁଛି। ଆସ୍ତେ ଆସ୍ତେ ଆଲୁଅଧାରଟା ଚଉଡ଼ା ହେଲା, ଆଉ ଖଣ୍ଡେ ଛୋଟ ପଟା ପଛକୁ ଘୁଞ୍ଚିଗଲା। ମୁହୂର୍ତ୍ତକ ପାଇଁ ମୁଁ ଭାବିପାରିଲି ନାହିଁ ଯେ ମରଣମୁହଁରୁ ଖସିଯିବାକୁ ଏଠି ଗୋଟେ ବାଟ ଅଛି। ପରମୁହୂର୍ତ୍ତରେ

ମୁଁ ସେଇ ବାଟେ ବାହାରକୁ ଡେଇଁପଡ଼ିଲି। ତା ପଛେ ପଛେ ପଟାଖଣ୍ଡ ବନ୍ଦ ହୋଇଗଲା। ଲ୍ୟାମ୍ପଟା ଭାଙ୍ଗିବା ଶବ୍ଦ ଆଉ ଛାତ ଓ ଚଟାଣ ଏକାଠି ମାଡ଼ିହେବାର ଶବ୍ଦରୁ ବୁଝିଲି ଖୁବ୍ ଅଳ୍ପକେ ମୁଁ ବଞ୍ଚିଗଲି।

''କେହି ଜଣେ ମୋ ହାତ ଧରି ଟାଣିବାରୁ ମୋର ଚେତା ଆସିଲା। ଦେଖିଲି ମୁଁ ଗୋଟେ ଅଣଓସାରିଆ ଜାଗାରେ ପଥର ମେଜିଆ ଉପରେ ପଡ଼ିଛି, ଆଉ ଜଣେ ନାରୀ ମୋ ପାଖରେ। ସେ ଡାହାଣ ହାତରେ ଗୋଟେ ମହମବତି ଧରିଥାନ୍ତି, ଆଉ ଲଇଁପଡ଼ି ବାଁ ହାତରେ ମତେ ଉଠାଉଥାନ୍ତି। ସେ ହେଲେ ସେଇ ନାରୀ ଯାହାଙ୍କ ସତର୍କବାଣୀକୁ ମୁଁ କାନ ଦେଇ ନ ଥିଲି।

''ଅଣନିଃଶ୍ୱାସୀ ହୋଇ ସେ କହିଲେ, 'ଚାଲିଆସ। ସେମାନେ ଆସି ପହଞ୍ଚିଯିବେ। ଏ ମୂଲ୍ୟବାନ ସମୟ ନଷ୍ଟ କରନାହିଁ। ଚାଲିଆସ।'

''ଏଥର ତାଙ୍କ ଉପଦେଶକୁ ଏଡ଼ିପାରିଲି ନାହିଁ। ଉଠି ଠିଆହେଲି। ତା'ପରେ ସେଇ ଅଣଓସାରିଆ ବାଟ ଆଉ ଗୋଲେଇ ଶିଡ଼ି ଦେଇ ତାଙ୍କ ପଛେ ପଛେ ଦୌଡ଼ିଲି। ଶିଡ଼ି ଶେଷରେ ଆଉ ଗୋଟିଏ ଓସାରିଆ ବାଟ। ଆମେ ସେଠି ପହଞ୍ଚିବାକ୍ଷଣି କାହାରି ଦୌଡ଼ିବା ପାଦଶବ୍ଦ ଆଉ ଦୁଇ ଜଣଙ୍କର କଥାବାର୍ତ୍ତା ଶୁଣିପାରିଲୁ— ଜଣେ ଉପର ମହଲାରୁ ଆଉ ଜଣେ ତଳ ମହଲାରୁ କହୁଥାନ୍ତି। ନାରୀଜଣକ ଭୟରେ ଚାରିଆଡ଼କୁ ଚାହିଁଲେ; ଯେମିତି କ'ଣ କରିବେ କିଛି ବୁଦ୍ଧି ଦିଶୁନାହିଁ। ତା'ପରେ ସେ ଗୋଟେ ଦରଜା ଖୋଲି ଗୋଟେ ଶୋଇବାଘର ଭିତରକୁ ଟାଣି ନେଲେ। ଖୋଲା ଝରକାବାଟେ ପରିଷ୍କାର ଜହ୍ନ ଆଲୁଅ ଆସୁଥାଏ।

''ଏଇ ଝରକା ତୁମର ଏକମାତ୍ର ବାଟ। ଏଟା ଅବଶ୍ୟ ଖୁବ୍ ଉଚ୍ଚା, ତଥାପି ତୁମେ ଡେଇଁପଡ଼ି ଚାଲିଯାଇ ପାରିବ।'

''ଏତିକିବେଳେ ସେ ବାଟର ଶେଷମୁଣ୍ଡରେ ଆଲୁଅ ଦିଶିଲା। ଦେଖିଲି କର୍ଣ୍ଣେଲ୍ ଲାଇସେଣ୍ଡର୍ ଗୋଟେ ହାତରେ ଲଣ୍ଠନଟାଏ ଆଉ ଆର ହାତରେ କଂସେଇ ଛୁରା ଭଳି କ'ଣଟାଏ ଧରି ଧାଇଁଆସୁଛନ୍ତି। ମୁଁ ଘର ଭିତରଦେଇ ଧାଇଁ ଯାଇ ଝରକାବାଟେ ବାହାରକୁ ଚାହିଁଲି। ତଳେ ବଗିଚା ଜହ୍ନ ଆଲୁଅରେ ସୁନ୍ଦର ଦେଖାଯାଉଥାଏ। ତଳୁ ଝରକାଟା ପ୍ରାୟ ତିରିଶ ଫୁଟ ଉଚ୍ଚ ହେବ। ମୁଁ ଝରକାବନ୍ଧଟା ଧରି ଆର ପାଖକୁ ଝୁଲିପଡ଼ିଲି।

ଡେଇଁପଡ଼ିବି ବୋଲି ଭାବୁଥିଲି। ତା'ପରେ ଭାବିଲି ସେ ଦୁଇଜଣଙ୍କ ଭିତରେ କ'ଣ ହଉଛି, ଦେଖିବି। ଯଦି ବଦ୍‌ମାସଟା ସେ ନାରୀଙ୍କ ଉପରେ ଅତ୍ୟାଚାର କରେ, ତା'ହେଲେ ଯାହାହେଉ ପଛେ ତାଙ୍କୁ ସାହାଯ୍ୟ କରିବାକୁ ଯିବି। ହଠାତ୍ ଷ୍ଟାର୍କ ଆସି ଘର ବାଟମୁହଁରେ ପହଞ୍ଚି ଭିତରକୁ ପଶିଆସିବାକୁ ବସିଲେ। ନାରୀଜଣକ ଦୁଇ ହାତ ମେଲାଇ ତାଙ୍କୁ ଅଟକାଇବାକୁ ଚେଷ୍ଟା କଲେ।

''ଇଂରେଜୀ ଭାଷାରେ ସେ କହିଲେ, 'ଫ୍ରିଜ୍! ଗଲାଥର ଯାହା ନିୟମ କରିଥିଲ ମନେକର। କହିଥିଲ ପରା ଆଉ ଯା ହେବନାହିଁ।'

''କର୍ଣ୍ଣେଲ୍ ପାଟିକରି ଉଠିଲେ, 'ତମେ ପାଗଳ ଏଲିସ୍। ତୁମେ ଆମର ସର୍ବନାଶ କରିବସିବ। ଲୋକଟା ସବୁ ଦେଖିପକାଇଛି। ମୋତେ ଛାଡ଼ିଦିଅ।' ଏହା କହି ସେ ତାଙ୍କୁ ଗୋଟେ କଡ଼କୁ ପେଲିଦେଇ ଝରକା ଆଡ଼କୁ ଧାଇଁଆସିଲେ। ମୁଁ ସେତେବେଳକୁ ଝରକାବାଡ଼ାଟା ଧରି ଝୁଲୁଥାଏ। ହଠାତ୍ ମୋ ହାତ ଉପରେ ଆଘାତ ହେଲା। ମୋ ହାତ ଯନ୍ତ୍ରଣାରେ ଖସିଗଲା, ଆଉ ମୁଁ ତଳେ ବଗିଚା ଭିତରେ ପଡ଼ିଗଲି।

''ଦେହରେ ଆଉ କିଛି ଆଘାତ ଲାଗି ନ ଥାଏ। ମୁଁ ଉଠି ପ୍ରାଣବିକଳରେ ସେଇ ଗଛବୁଦା ଭିତରଦେଇ ଧାଇଁଲି। ହଠାତ୍ ମୋ ମୁଣ୍ଡଟା ଝିମିଝିମି ହୋଇ ଦେହ ବଡ଼ ଦୁର୍ବଳ ଲାଗିଲା। ହାତଟା ଆଡ଼େ ଚାହିଁଲି। ଦେଖିଲି ମୋ ବୁଢ଼ା ଆଙ୍ଗୁଠିଟି ପୂରା କଟିଯାଇଛି, ଆଉ ସେଥିରୁ ରକ୍ତଧାର ଛୁଟିଛି। ମୁଁ ରୁମାଲ୍‌ଟା ବାହାର କରି ତା ଚାରିପାଖେ ଗୁଡ଼ାଇଦେଲି। ତା'ପରେ ଗୋଲାପ ବୁଦାଗୁଡ଼ାକ ଭିତରେ ଚେତା ହରାଇ ପଡ଼ିଗଲି।

''କେତେ ସମୟ ସେଠି ପଡ଼ିରହିଲି ଜାଣେନା। ଖୁବ୍ ବେଶି ସମୟ ହୋଇଥିବ। ମୋର ଚେତା ଆସିଲାବେଳକୁ ଜହ୍ନ ବୁଡ଼ି ସକାଳ ହେବା ଉପରେ। ମୋ ପୋଷାକପତ୍ର ସବୁ କାକର ପଡ଼ି ଓଦା। କୋଟ୍‌ରେ ହାତ ରକ୍ତରେ ଜୁଡୁବୁଡୁ। ଆଙ୍ଗୁଠିମୂଳଟା ପୋଡୁଛି। ଗଲା ରାତିର ଘଟଣାସବୁ ମନେପଡ଼ିଗଲା। ଭାବିଲି ଏବେ ମଧ୍ୟ ମୁଁ ନିରାପଦ ନୁହେଁ। ଉଠି ଠିଆହେଲି। ଚାରିଆଡ଼େ ଚାହିଁଲି। ଘର ବା ବଗିଚାର ଚିହ୍ନ ନାହିଁ। ମୁଁ ରାସ୍ତାକଡ଼ରେ ପଡ଼ିଛି। ଟିକିଏ ଆଗରେ ଧାଡ଼ିଏ ଲମ୍ବା କୋଠାଘର। ଆଶ୍ଚର୍ଯ୍ୟ ଲାଗିଲା। ସେଇ ଘରଆଡ଼କୁ ଚାହିଁଲି। ଦେଖିଲି ଯେଉଁ ଷ୍ଟେସନରେ ମୁଁ ଗଲା ରାତି

ଓହ୍ଲାଇଥିଲି, ଏ ସେଇ ଷ୍ଟେସନ। ମୋ ହାତରେ ଏ କ୍ଷତଟା ନ ଥିଲେ ପୂର୍ବ ରାତିର ଘଟଣାଟାକୁ ଗୋଟେ ଦୁଃସ୍ୱପ୍ନ ବୋଲି ମନେକରିଥାନ୍ତି।

''କିଛି ବୁଝି ନ ପାରି ଷ୍ଟେସନକୁ ଗଲି, ଆଉ ସକାଳ ଟ୍ରେନ୍ ବିଷୟ ପଚାରିଲି। ଶୁଣିଲି, ଘଣ୍ଟାଏ ଭିତରେ ଗୋଟେ ଟ୍ରେନ୍ ରିଡ଼ିଙ୍ଗ୍ ଯିବ। ମୁଁ ଆସିଲାବେଳେ ଯେଉଁ କୁଲିକୁ ଦେଖିଥିଲି, ସେ ଥିଲା। କର୍ଣ୍ଣେଲ୍ ଲାଇସେଣ୍ଡର୍ ଷ୍ଟାର୍କ ବିଷୟରେ ତାକୁ ପଚାରିଲି। ନାଁଟା ସେ କେବେ ଶୁଣିନାହିଁ ବୋଲି କହିଲା। ଗଲା ରାତି ମୋତେ ଅପେକ୍ଷା କରିଥିବା ଗାଡ଼ି ସେ ଦେଖିଥିଲା କି ବୋଲି ପଚାରିଲି। ସେ ମନା କଲା। ପାଖରେ କେଉଁଠି ଥାନା ଅଛି ବୋଲି ପଚାରିଲି। କହିଲା, ପ୍ରାୟ ତିନି ମାଇଲ୍ ଦୂରରେ ଗୋଟେ ଥାନା ଅଛି।''

''ଏତେ ବାଟ ଯିବାପାଇଁ ମତେ ଦୁର୍ବଳ ଲାଗୁଥିଲା। ତେଣୁ ଠିକ୍ କଲି ସହରକୁ ଫେରିବାପରେ ପୋଲିସ୍‌କୁ ଏକଥା କହିବି। ଛଅଟା ପରେ ଏଠି ଆସି ପହଞ୍ଚି ପ୍ରଥମେ ଡାକ୍ତରଙ୍କ ପାଖକୁ ଗଲି। ସେ ଦୟାକରି ମତେ ଏଠିକି ନେଇଆସିଲେ। ଏବେ ସବୁକଥା ଆପଣଙ୍କୁ କହିଲି। ଆପଣ ଯାହା ଉପଦେଶ ଦେବେ, ସେଇଆ କରିବି।''

ଆମେ ଏ ଅଦ୍‌ଭୁତ କାହାଣୀ ଶୁଣି କିଛି ସମୟ ତୁନି ହୋଇ ବସିରହିଲୁ। ତା' ପରେ ହୋମ୍ ଥାକ ଉପରୁ ଗୋଟେ ଖାତା ଆଣିଲେ। ସେଥିଲେ ଖବରକାଗଜର କଟା ଅଂଶ ଛପାଯାଇଥିଲା।

ଗୋଟେ ଜାଗା ଦେଖାଇ ସେ କହିଲେ, ''ଏଇଟା ଗୋଟେ ବିଜ୍ଞାପନ। ବର୍ଷେ ତଳେ ଖବରକାଗଜରେ ବାହାରିଥିଲା। ଶୁଣ! 'ଏଇ ମାସ ନଅ ତାରିଖରେ ନିରୁଦ୍ଦିଷ୍ଟ ମିଷ୍ଟର୍ ଜେରେମିଆ ହେଲିଂ, ବୟସ ଛବିଶ ବର୍ଷ, ହାଇଡ୍ରୋଲିକ୍ ଇଞ୍ଜିନିୟର ରାତି ଦଶଟା ବେଳେ ତାଙ୍କ ଘରୁ ବାହାରିଗଲେ। ତା ପରେ ତାଙ୍କର କିଛି ଖୋଜଖବର ନାହିଁ ଇତ୍ୟାଦି। ଏଥିରୁ ଜଣାଯାଉଛି ଗଲା ଥର କର୍ଣ୍ଣେଲ୍ ତାଙ୍କ ମେସିନ୍ ଠିକ୍ କରିବାକୁ ଏଇ ଇଞ୍ଜିନିୟରଙ୍କୁ ଡାକିନେଇଥିଲେ।''

''ହେ ଭଗବାନ୍! ସେ ନାରୀ ତେବେ ଏଇ କଥା କହୁଥିଲେ!''

''ସେଥିରେ ସନ୍ଦେହ ନାହିଁ। ଏଇ କର୍ଣ୍ଣେଲ୍ ଗୋଟେ ସୟତାନ; ଆଉ ତା ବାଟରୁ ସବୁ ସଫା କରିଦେବା ତାର ମତଲବ। ଯାହାହେଉ

ପ୍ରତିଟି ମୁହୂର୍ତ୍ତ ମୂଲ୍ୟବାନ୍‌। ଆମକୁ ଆଏଫୋର୍ଡ଼ ଯିବା ଆଗରୁ ଏବେ ସ୍କଟ୍‌ଲାଣ୍ଡ୍ ୟାର୍ଡ଼ ଯିବାକୁ ହେବ।''

ପ୍ରାୟ ତିନି ଘଣ୍ଟା ପରେ ଆମେ ରିଡ଼ିଙ୍ଗ୍ ଷ୍ଟେସନରୁ ସେଇ ଛୋଟ ବର୍କସାୟାର ଗାଁଆଡ଼କୁ ଚାଲିଲୁ। ଆମେ ଥିଲୁ ପାଞ୍ଚଜଣ, ସେରଲକ୍ ହୋମ୍‌, ସେ ଇଞ୍ଜିନିୟର, ସ୍କଟ୍‌ଲାଣ୍ଡ୍ ୟାର୍ଡ଼ର ଇନିସ୍‌ପେକ୍ଟର ବ୍ରାଡ୍‌ଷ୍ଟ୍ରୀଟ୍, ଜଣେ ସାଦା ପୋଷାକପିନ୍ଧା ପୋଲିସ ଆଉ ମୁଁ। ସିଟ୍ ଉପରେ ବ୍ରାଡ୍‌ଷ୍ଟ୍ରୀଟ୍ ସେ ଅଞ୍ଚଳର ଗୋଟେ ନକ୍‌ସା ରଖି କମ୍ପାସ୍‌ରେ ଗାର ଟାଣୁଥାନ୍ତି। ନକ୍‌ସାର ମଝି ରଖିଥାନ୍ତି ଆଏଫୋର୍ଡ଼କୁ।

ଗାର ଟାଣିସାରି ସେ କହିଲେ, ''ଏଇ ଦେଖ। ମୁଁ ଦଶ ମାଇଲ ବ୍ୟାସାର୍ଦ୍ଧର ବୃତ୍ତ ଟାଣିଦେଇଛି। ଆମେ ଯେଉଁ ଜାଗାକୁ ଯାଉଛେ, ସେଟା ଏଇ ଗାର ପାଖାପାଖି ହେବ। ଆପଣ ଦଶ ମାଇଲ ବୋଲି କହୁଥିଲେ ନା ?''

''ହଁ, ଗାଡ଼ିରେ ଯିବାକୁ ଆମକୁ ଘଣ୍ଟାଏ ଲାଗିଥିଲା।''

''ତା' ହେଲେ ଆପଣ କ'ଣ ଭାବୁଛନ୍ତି ଯେ ଆପଣଙ୍କର ଚେତା ନ ଥିବାବେଳେ ସେମାନେ ପୁଣି ଆପଣଙ୍କୁ ଆଣି ଏଠି ଛାଡ଼ିଦେଇଗଲେ ?''

''ସେମାନେ ସେଇଆ କରିଥିବେ। ମୋର କିଛି ଠିକ୍ ମନେ ପଡୁନାହିଁ।''

ମୁଁ କହିଲି, ''ଗୋଟେ କଥା ମୁଁ ବୁଝିପାରୁନାହିଁ। ଆପଣ ବଗିଚାରେ ଚେତା ବୁଡ଼ି ପଡ଼ିଥିବାବେଳେ ସେମାନେ ପୁଣି ଆପଣଙ୍କୁ ଶେଷକରି ନ ଦେଲେ କାହିଁକି ? ବୋଧହୁଏ ସେଇ ନାରୀଙ୍କ କଥାରେ ସୟତାନଟାର ମନ ତରଳିଯାଇଥିବ।''

''ସେ କଥା ମୋ ମନକୁ ପାଉନାହିଁ। ସେମିତିକା ହିଂସ୍ର ମୁହଁ ମୁଁ କେବେ ଦେଖିନାହିଁ।''

''ଖୁବ୍ ଶୀଘ୍ର ଆମେ ସବୁ ଜାଣିପାରିବା।'' ବ୍ରାଡ୍‌ଷ୍ଟ୍ରୀଟ୍ କହିଲେ, ''ଆଚ୍ଛା, ମୁଁ ବୃତ୍ତଟା ଟାଣି ଦେଇଛି। ଖାଲି କେଉଁ ଜାଗାରେ ଆମେ ସେ ଲୋକଗୁଡ଼ାଙ୍କୁ ପାଇବା, ସେତିକି ଜାଣିବା କଥା।''

ଧୀରଭାବରେ ହୋମ୍ କହିଲେ, ''ସେ ଜାଗାଟା ଉପରେ ମୁଁ ମୋ ଆଙ୍ଗୁଠି ରଖିଦେଇ ପାରିବି।''

''ସତେ ?'' ଇନିସ୍‌ପେକ୍‌ଟର କହିଲେ, ''ଆପଣ ତା ହେଲେ କିଛି ଗୋଟେ ମନେ ମନେ ଠିକ୍ କରି ସାରିଲେଣି। ଦେଖିବା, କାହା ମତ

ଆପଣଙ୍କ ସାଥିରେ ମିଶୁଛି। ମୁଁ କହୁଛି, ଜାଗାଟା ଦକ୍ଷିଣ ଦିଗକୁ; କାରଣ ସେ ପାଖଟା ନିରୋଳା।''

''ମୁଁ କହୁଛି ପୂର୍ବକୁ।'' ଇଞ୍ଜିନିୟର କହିଲେ।

ସାଦା ପୋଷାକପିନ୍ଧା ପୋଲିସ ଅଫିସର କହିଲେ, ''ମୋ ମତରେ ପଶ୍ଚିମକୁ; କାରଣ ସେ ପାଖରେ କେତେଗୁଡ଼ିଏ ଛୋଟ ଛୋଟ ଗାଁ ଅଛି।''

ଇନିସ୍‌ପେକ୍ଟର କହିଲେ, ''ଆମେ ସମସ୍ତେ ତ ପ୍ରକାରେ ପ୍ରକାରେ କହିଲେ। ମିଷ୍ଟର୍ ହୋମ୍, ଆପଣ କାହା ମତ ସମର୍ଥନ କରୁଛନ୍ତି ?''

''ଆପଣମାନେ ସମସ୍ତେ ଭୁଲ୍ କହିଛନ୍ତି।''

''କିନ୍ତୁ ସମସ୍ତଙ୍କର ଭୁଲ୍ ହୋଇପାରେନା।''

''ହଁ, ହୋଇପାରେ। ଜାଗାଟା ହେଲା ଏଇଁଠି।'' ସେ ବୃତ୍ତର ଠିକ୍ କେନ୍ଦ୍ରରେ ତାଙ୍କ ଆଙ୍ଗୁଠି ରଖିଲେ, ''ଏଇ ଜାଗାରେ ଆମେ ତାଙ୍କୁ ପାଇବା।''

''କିନ୍ତୁ ମୁଁ ଗାଡ଼ିରେ ପ୍ରାୟ ବାର ମାଇଲ ବାଟ ଯାଇଛି।''

''ହଁ, ଛଅ ମାଇଲ ଗଲେ, ଆଉ ଛଅ ମାଇଲ ଫେରିଲେ; ତା'ଛଡ଼ା ଆଉ କିଛି ନୁହେଁ। ଆପଣ ତ କହୁଥିଲେ ଘୋଡ଼ାଟା ବେଶ୍ ସତେଜ ଆଉ ଚିକ୍‌କଣ ଦିଶୁଥିଲା। ଯଦି ଘୋଡ଼ାଟା ବାର ମାଇଲ ଦୂରରୁ ଆସିଥା'ନ୍ତା ତେବେ ସତେଜ ଦିଶନ୍ତା କିପରି ?''

''ପ୍ରକୃତରେ ଆପଣଙ୍କ କଥା ସମ୍ଭବ।'' ଟିକିଏ ଚିନ୍ତାକରି ବ୍ରାଡ୍‌ଷ୍ଟ୍ରୀଟ୍ କହିଲେ, ''ଏଇ ଦଳର କାମ କ'ଣ ନିଃସନ୍ଦେହରେ ଜଣାଯିବ ?''

''ନିଶ୍ଚୟ।'' ହୋମ୍ ଉତ୍ତର ଦେଲେ, ''ସେମାନେ ଖୁବ୍ ବଡ଼ଧରଣର ଜାଲ୍ ମୁଦ୍ରା ତିଆରି କରିବା ଦଳ। ରୁପା ବଦଳରେ ଆଉ ଗୋଟେ ମିଶାଧାତୁ ବ୍ୟବହାର କରିବାକୁ ଏଇ ମେସିନ୍ ବ୍ୟବହାର କରୁଛନ୍ତି।''

''ହଁ, ଏ ଦଳଟା କଥା ଆମେ କେତେଦିନ ହେଲା ଜାଣିଲୁଣି। ସେମାନେ ହଜାର ହଜାର ସଂଖ୍ୟାରେ ଅଧାକ୍ରାଉନ୍ ମୁଦ୍ରା ତିଆରି କରୁଛନ୍ତି। ଆମେ ତାଙ୍କ ପିଛା ଧରି ରିଡ଼ିଙ୍ଗ୍‌ଯାଏ ଗୋଡ଼େଇ ଆସିଥିଲୁ; କିନ୍ତୁ ସେଇଠୁ ଆଉ ତାଙ୍କ ପତ୍ତା ପାଇଲୁନାହିଁ। ଏଥର ଆମକୁ ଗୋଟେ ଭଲ ସୁଯୋଗ ମିଳିଛି। ସେମାନେ ପ୍ରାୟ ଆମ ହାତମୁଠାରେ।''

କିନ୍ତୁ ଇନିସ୍‌ପେକ୍ଟରଙ୍କ ଆଶା ସଫଳ ହେଲାନାହିଁ; ବଦମାସ୍‌ଗୁଡ଼ାକ ପୁଲିସ ହାତରେ ଧରାପଡ଼ିବାର ଯୋଗ ନ ଥିଲା। ଆମେ ଆଏଫୋର୍ଡ଼୍

ଷ୍ଟେସନରେ ପହଞ୍ଚି ଦେଖିଲୁ ପାଖରେ ଗଛ ଆଢୁଆଳରେ ପ୍ରବଳ ଧୂଆଁ।

ଟ୍ରେନ୍ ଚାଲିଗଲା। ବ୍ରାଡ୍‌ଷ୍ଟ୍ରୀଟ୍ ପଚାରିଲେ, ''ଏଟା କ'ଣ ଘରପୋଡ଼ି ?''

''ହଁ ଆଜ୍ଞା।'' ଷ୍ଟେସନ ମାଷ୍ଟର୍ ଉତ୍ତର ଦେଲେ।

''କେତେବେଳେ ନିଆଁ ଲାଗିଲା ?''

''ଶୁଣିଲି ରାତିରେ। ଏତେବେଳକୁ ନିଆଁଟା ପ୍ରବଳ ହୋଇଗଲାଣି।''

''ସେଟା କାହା ଘର ?''

''ଡାକ୍ତର ବିଚର୍‌ଙ୍କର ?''

ଇଞ୍ଜିନିୟର ପଚାରିଲେ, ''ଆଚ୍ଛା ଡାକ୍ତର ବିଚର୍ କ'ଣ ଜର୍ମାନ୍ ଲୋକ ? ଖୁବ୍ ପତଳା ?''

ହସି ହସି ଷ୍ଟେସନ ମାଷ୍ଟର୍ କହିଲେ, ''ନା ଆଜ୍ଞା! ଡାକ୍ତର ବିଚର୍ ଇଂରେଜ ଲୋକ, ବେଶ୍ ହୃଷ୍ଟପୁଷ୍ଟ; କିନ୍ତୁ ତାଙ୍କ ଘରେ ଜଣେ ରୋଗୀ ଅଛନ୍ତି। ସେ ବିଦେଶୀ, ଆଉ ଖୁବ୍ ପତଳା।''

ଷ୍ଟେସନ ମାଷ୍ଟର୍‌ଙ୍କ କଥା ସରୁ ନ ସରୁଣୁ ଆମେ ସେଇ ନିଆଁଆଡ଼େ ଧାଇଁଲୁ। ରାସ୍ତାଟା ଗୋଟେ ପାହାଡ଼ ଉପର ଦେଇ ଯାଇଛି। ଆଗରେ ଗୋଟାଏ ପ୍ରଶସ୍ତ ଧଳା କୋଠା। ଘରଟାର ସବୁ ଝରକା, କବାଟବାଟେ ନିଆଁ ବାହାରୁଛି। ବଗିଚାରେ ତିନିଟା ଦମକଳ ନିଆଁ ଲିଭାଇବାକୁ ପ୍ରବଳ ଚେଷ୍ଟା ଚଳେଇଛନ୍ତି।

''ଏଇ ଘରଟା।'' ହାଥର୍‌ଲି ପାଟିକରି ଉଠିଲେ, ''ସେଇଠି ସେ ଗୋଲାପ ଗଛସବୁ, ଯେଉଁଠି ମୁଁ ପଡ଼ିଥିଲି। ସେଇ ଦ୍ୱିତୀୟ ଝରକାବାଟେ ମୁଁ ତଳକୁ ଡେଇଁଥିଲି।''

ହସି ହସି ହୋମ୍ କହିଲେ, ''ଯାହାହେଉ ଆପଣ ଅନ୍ତତଃ ସେମାନଙ୍କ ଉପରେ ପ୍ରତିଶୋଧ ନେଇପାରିଛନ୍ତି। ଯେଉଁ ଲ୍ୟାମ୍ପଟା ଆପଣ ସାଥିରେ ନେଇଥିଲେ, ସେଟା ଯେତେବେଳେ ଚାପିହୋଇଗଲା, କାଠଗୁଡ଼ାକରେ ନିଆଁ ଲାଗିଗଲା– ଏଥିରେ କିଛି ସନ୍ଦେହ ନାହିଁ। ସେମାନେ ଆପଣଙ୍କ ପଛରେ ଗୋଡ଼େଇଥିଲେ। ତେଣୁ ନିଆଁଆଡ଼େ ତାଙ୍କର ନଜର ପଡ଼ିଲା ନାହିଁ। ଏ ଲୋକଗହଳିରେ ସେମାନେ ଥିବେ କି କ'ଣ ଦୃଷ୍ଟି ରଖିଥାନ୍ତୁ। ମୋର କିନ୍ତୁ ସନ୍ଦେହ, ସେମାନେ ଏତେବେଳକୁ ଶହ ଶହ ମାଇଲ ଦୂରକୁ ଚାଲିଯିବେଣି।''

ହୋମ୍‌ଙ୍କ ସନ୍ଦେହ ସତ ହେଲା। ସେଇ ଦିନଠୁ ସେଇ ସୁନ୍ଦରୀ ନାରୀ, ସେଇ ସୟତାନ ଜର୍ମାନ୍ କିମ୍ବା ସେ ବଦମାସ ଇଂରେଜ ଲୋକର କିଛି ଖବର ଶୁଣାନାହିଁ। ସେ ଦିନ ସକାଳେ ଜଣେ ଚାଷୀ ଗୋଟେ ଗାଡ଼ି ଦେଖିଥିଲା। ସେଥିରେ କେତେଜଣ ଲୋକ ଆଉ କେତେଟା ବଡ଼ ବଡ଼ ବାକ୍‌ସ ଥିଲା। ଗାଡ଼ିଟା ଖୁବ୍ ଜୋର୍‌ରେ ରିଡ଼ିଙ୍ଗ୍ ଆଡ଼େ ଯାଉଥିଲା। କିନ୍ତୁ ତାଙ୍କର ଆଉ କିଛି ପତ୍ତା ମିଳିଲା ନାହିଁ। ସେମାନେ କୁଆଡ଼େ ଗଲେ, କ'ଣ କଲେ ହୋମ୍ ମଧ ଜାଣିପାରିଲେ ନାହିଁ।

ଘର ଭିତରର ଅଦ୍‌ଭୁତ ବ୍ୟବସ୍ଥା ଦେଖି ନିଆଁଲିଭାଳି ଦଳ ଆଶ୍ଚର୍ଯ୍ୟ ହୋଇଗଲେ। ତା'ଛଡ଼ା ଦ୍ୱିତୀୟ ମହଲାର ଗୋଟେ ଝରକାବନ୍ଧ ଉପରେ ସଦ୍ୟ କଟା ଗୋଟେ ବୁଢ଼ାଆଙ୍ଗୁଠି ଦେଖି ସେମାନେ ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ। ପ୍ରାୟ ସୂର୍ଯ୍ୟାସ୍ତ ବେଳକୁ ବହୁ କଷ୍ଟରେ ସେମାନେ ନିଆଁକୁ ଆୟତ୍ତ କଲେ; କିନ୍ତୁ ସେତେବେଳକୁ ଘରର ଛାତ ପୂରାପୂରି ଧ୍ୱଂସ ହୋଇଯାଇଥିଲା। ଯେଉଁ ମେସିନ୍ ବିଚରା ଇଞ୍ଜିନିୟରଙ୍କ ଦୁର୍ଭାଗ୍ୟ ଘଟେଇଲା, ତାର କେତେଟା ବଙ୍କା ପାଇପ୍ ଛଡ଼ା ଆଉ କିଛି ଚିହ୍ନ ନ ଥିଲା। ଗୋଟେ ବାହାର ଘରେ ପ୍ରଚୁର ପରିମାଣରେ ନିକେଲ ଆଉ ଟିଣ ଜମାହୋଇଥିଲା; କିନ୍ତୁ କୌଣସି ମୁଦ୍ରା ମିଳିଲା ନାହିଁ। ଜଣାଗଲା ସେଇ ବଡ଼ ବଡ଼ ବାକ୍‌ସରେ ସେମାନେ ତାକୁ ନେଇଯାଇଥିବେ।

ହାଇଡ୍ରୋଲିକ୍ ଇଞ୍ଜିନିୟର ବଗିଚାରୁ ରାସ୍ତାକଡ଼କୁ କେମିତି ଆସିଲେ ସେ କଥା ରହସ୍ୟ ଭିତରେ ରହିଯାଇଥାନ୍ତା। କଅଁଳ ମାଟିରୁ ଆମେ ସବୁ ଜାଣିପାରିଲୁ– ଦୁଇ ଜଣ ଲୋକ ତାଙ୍କୁ ସେଠିକି ଟେକି ନେଇଥିଲେ। ଜଣଙ୍କ ପାଦ ଖୁବ୍ ଛୋଟ, ଆଉ ଜଣଙ୍କର ବେଶ୍ ବଡ଼; ମାଟିରେ ଚିହ୍ନ ପଡ଼ିଥିଲା। ସମ୍ଭବତଃ ସେଇ ଇଂରେଜ ଲୋକ ସେ ନାରୀ ସାଥିରେ ମିଶି ବିଚରା ଇଞ୍ଜିନିୟରଙ୍କୁ ବିପଦ ବାହାରକୁ ନେଇଆସିଥିଲେ।

ଆମେ ଲଣ୍ଡନ ଫେରିବା ପାଇଁ ଟ୍ରେନ୍‌ରେ ବସିଲୁ। ଇଞ୍ଜିନିୟର କହିଲେ, ''ଏ ଧନ୍ଦାରେ ପଶି ମୁଁ ମୋ ବୁଢ଼ା ଆଙ୍ଗୁଠି ହରେଇଲି, ପଚାଶ ଗିନି ହରେଇଲି; କିନ୍ତୁ ଲାଭ ପାଇଲି କ'ଣ ?''

''ଅନୁଭୂତି।'' ହସି ହସି ହୋମ୍ ଉତ୍ତର ଦେଲେ।

□ □ □

## ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ବହି

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ବିଶ୍ୱବିଖ୍ୟାତ ଲେଖକମାନଙ୍କ ବହିର ଓଡ଼ିଆ ସାରାନୁବାଦ ସୁଲଭ ମୂଲ୍ୟରେ ସଂଗ୍ରହ କରି ପିଲାମାନଙ୍କୁ ପଢ଼ିବାକୁ ଦେଇ ସେମାନଙ୍କ ପଠନ ପ୍ରବୃତ୍ତି ବୃଦ୍ଧି କରନ୍ତୁ ।

| | |
|---|---|
| ଚାର୍ଲସ୍ ଡିକେନ୍ସ୍ | ଥୋମାସ୍ ହାର୍ଡି |
| ଆଲେକଜାଣ୍ଡର ଡୁମା | ଡାନିଏଲ୍ ଡିଫୋ |
| ୱାଲଟର୍ ସ୍କଟ୍ | ବ୍ଲାକ୍‌ମୋର୍ |
| ଭିକ୍ଟର ହ୍ୟୁଗୋ | ଜର୍ଜ ଇଲିଅଟ |
| ଏଚ୍. ରାଇଡର୍ ହାଗାର୍ଡ | ସେକ୍ସପିଅର |
| ଜାକ୍ ଲଣ୍ଡନ୍ | ଲିଓ ଟଲଷ୍ଟୟ |
| ମାର୍କ ଟୋୟେନ୍ | ବେକନ୍ |
| ଶାରଲୋଟ୍ ବ୍ରଣ୍ଟେ | ହୋମର୍ |
| ଜୁଲ ଭାର୍ଣ୍ଣେ | ଗର୍କି |
| ଜୋନାଥନ୍ ସ୍ୱିଫ୍ଟ | ମୋପାସାଁ |
| ଆଣ୍ଟୋନି ହୋପ୍ | ଗ୍ରୀମସ୍ |
| ଆର୍. ଏଲ୍. ଷ୍ଟିଭେନ୍ସନ | ଆଣ୍ଡରସନ |
| ୱାଶିଂଟନ୍ ଇରଭିଙ୍ଗ | ବଙ୍କିମଚନ୍ଦ୍ର |
| ଆର୍. ଏମ୍. ବାଲାଣ୍ଟାଇନ | ଶରତ୍‌ଚନ୍ଦ୍ର |
| ଏଚ୍. ଜି ୱେଲସ୍ | କାଳିଦାସ |
| ଅଲିଭର୍ ଗୋଲଡସ୍ମିଥ୍ | ଶୂଦ୍ରକ |
| ଉଇଲିୟମ୍ ଥାକେରି | ପ୍ରେମଚାନ୍ଦ |
| ଆର୍. ସବାଟିନି | ଫକୀରମୋହନ |
| ସର୍ଭେଣ୍ଟିସ୍ | ଜାତକ କାହାଣୀ |
| ଜେନ୍ ଅଷ୍ଟିନ୍ | ମହାଭାରତ କାହାଣୀ |
| ଯୋଶେଫ୍ କୋନାର୍ଡ | ରାମାୟଣ କାହାଣୀ |
| ଆର୍ଥର୍ କୋନାନ୍‌ଡୟଲ | କଥାସରିତସାଗର |
| ଉଇଲକି କୋଲିନ୍ସ | ହିତୋପଦେଶ କାହାଣୀ |
| ଜି. ଏ. ହେଣ୍ଟି | ପଞ୍ଚତନ୍ତ୍ର କାହାଣୀ |

ପ୍ରକାଶକ : ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨